ବିଶ୍ୱସାହିତ୍ୟ ଗ୍ରନ୍ଥମାଳା : ସଂଖ୍ୟା—୧୮

# ଶେକ୍‌ସପିଅର୍ କାହାଣୀ

ପ୍ରଥମ ଖଣ୍ଡ

ଅନୁବାଦ :

ଅଧ୍ୟାପକ ଶ୍ରୀଧର ଦାସ,
ଏମ୍. ଏ., ବି. ଇଡ୍.

ଗ୍ରନ୍ଥମନ୍ଦିର

ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ମୁଦ୍ରକ :

ଶ୍ରୀ ଜୟରାମ ମହାପାତ୍ର

ଗ୍ରନ୍ଥ ପ୍ରକାଶନୀ

କଟକ-୧

ପ୍ରଥମ ମୁଦ୍ରଣ : ଜାନୁଆରୀ, ୧୯୭୦

ଦ୍ୱିତୀୟ ମୁଦ୍ରଣ : ଜୁନ, ୧୯୭୨

ମୂଲ୍ୟ : ଦୁଇ ଟଙ୍କା

# ସୂଚୀ

# ଜୁଲିଅସ୍ ସିଜର୍

ପ୍ରାୟ ଦୁଇ ହଜାର ବର୍ଷ ତଳେ ରୋମ୍ ନଗରରେ ଜଣେ ପ୍ରସିଦ୍ଧ ଲୋକ ଥିଲେ । ତାଙ୍କର ନାମ ଜୁଲିଅସ୍ ସିଜର୍ । ସେ ଜଣେ ପ୍ରଧାନ ବୀର । ସାରା ଇଉରୋପରେ ତାଙ୍କର ନାମ ଜଣାଶୁଣା ଥିଲା । ପୃଥିବୀର ନାନା ଦେଶ ଜୟକରି ସେ ଖ୍ୟାତି ଅର୍ଜିଥିଲେ । ରାଜ୍ୟ ଜୟ କରି ରୋମ୍‌କୁ ଫେରି ଆସି ସେ ରୋମ୍‌ର ଲୋକଙ୍କର ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲେ ।

ଦିନକୁ ଦିନ ତାଙ୍କର କ୍ଷମତା ବୃଦ୍ଧି ପାଇବାକୁ ଲାଗିଲା । ଲୋକେ ତାଙ୍କୁ ଦେବତା ପରି ଭକ୍ତି କରିବାକୁ ଲାଗିଲେ । ସେତେବେଳେ ରୋମ୍‌ର ଶାସନଭାର କେତେ ଜଣ ଲୋକଙ୍କ ହାତରେ ଥିଲା । ସେମାନେ ସନ୍ଦେହ କଲେ ଯେ ସିଜର୍ ଦିନେ ସମସ୍ତ କ୍ଷମତା ନିଜ ହାତକୁ ନେଇଯିବେ । ଜୁଲିଅସ୍ ସିଜର୍‌ଙ୍କ ଭଳି ଜଣେ ଉଚ୍ଚାଭିଳାଷୀ ଲୋକ ପକ୍ଷରେ ଏପରି କରିବା ଅସମ୍ଭବ ନୁହେଁ । ତେଣୁ ସେମାନେ ସିଜର୍‌ଙ୍କର ବିରୋଧୀ ହୋଇଉଠିଲେ । ଏହି ବିରୋଧୀ ଲୋକମାନଙ୍କ ଭିତରେ ସିଜର୍‌ଙ୍କର କେତେକ ବନ୍ଧୁ ମଧ୍ୟ ଥିଲେ ।

ରୋମ୍‌ରେ ବ୍ରୁଟସ୍ ବୋଲି ଜଣେ ଲୋକ ଥିଲେ । ସେ ବଡ଼ ନ୍ୟାୟପରାୟଣ ଓ ସାଧୁ ଲୋକ । ରୋମ୍‌ର ମଙ୍ଗଳ ସାଧନ କରିବା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଲୋକେ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ଏହି ବ୍ରୁଟସ ଓ ସିଜର୍‌ଙ୍କ ଭିତରେ ପ୍ରଗାଢ଼ ବନ୍ଧୁତା ଥିଲା ସତ୍ୟ, ମାତ୍ର ବ୍ରୁଟସ୍ ମଧ୍ୟ ମନେ କରୁଥିଲେ ଯେ ସିଜର୍ କ୍ଷମତା ପାଇଁ

ବ୍ୟାକୁଳ । ସେ ଏଥିରେ ପ୍ରମାଦ ଗଣିଲେ । ପ୍ରକୃତପକ୍ଷରେ ସିଜର୍ ନିଜକୁ ସମସ୍ତଙ୍କଠାରୁ ବଡ଼ ମନେକରୁଥିଲେ ।

ବ୍ରୁଟସ୍‌ଙ୍କର ଶାଳକଙ୍କର ନାମ କାସିଅସ୍ । ଦିନେ ଗୋଟିଏ ରାସ୍ତାରେ ସେ ଦୁହିଁଙ୍କର ଦେଖା ହେଲା । ସେଦିନ ରୋମ୍‌ରେ ଏକ ବିରାଟ କ୍ରୀଡ଼ା କୌତୁକର ବ୍ୟବସ୍ଥା ଥିଲା । ହଜାର ହଜାର ଲୋକ ଏହି କ୍ରୀଡ଼ା କୌତୁକ ଦେଖିବାପାଇଁ ଏକତ୍ର ହୋଇଥିଲେ । କାସିଅସ୍ ବ୍ରୁଟସ୍‌ଙ୍କୁ କହିଲେ, "ଆଜ ବୋଧହୁଏ ଲୋକମାନେ ସିଜର୍‌ଙ୍କୁ ରାଜ-ମୁକୁଟ ପିନ୍ଧାଇ ସିଂହାସନରେ ବସାଇବେ ।" ବ୍ରୁଟସ୍ କହିଲେ, "ବହୁ ସଂଖ୍ୟକ ଲୋକ ଚିତ୍କାର କରୁଥିଲେ । ମୋର ସନ୍ଦେହ ହେଉଛି ଯେ ତୁମ୍ଭ କଥା ସତ୍ୟ ।"

ଏହି ସମୟରେ ପୁଣି କୋଳାହଳ ଶୁଣାଗଲା । ତହିଁ କାସିଅସ୍ କହିଲେ, "ସିଜର୍ ତୁମର ଅନ୍ତରଙ୍ଗ ବନ୍ଧୁ । ସେ ରାଜା ହେଲେ ତୁମର ଆନନ୍ଦିତ ହେବାର କଥା ।"

ବ୍ରୁଟସ୍ ଦୁଃଖରେ କହିଲେ, "ସିଜର୍ ମୋର ବନ୍ଧୁ ସତ୍ୟ, ମୁଁ ତାଙ୍କୁ ଅନ୍ତରର ସହିତ ଭଲପାଏ । କିନ୍ତୁ ସେ ରୋମ୍‌ର ରାଜା ହେବାଟା ମୁଁ ଆଦୌ ପସନ୍ଦ କରି ପାରିବି ନାହିଁ ।"

ରୋମ୍‌ରେ ଦଳେ ଲୋକ ସିଜର୍‌ଙ୍କର ଏହି କ୍ଷମତା ବୃଦ୍ଧିକୁ ବିରୋଧ କରୁଥିଲେ । କାସିଅସ୍ ସେହି ଦଳର ଅନ୍ତର୍ଗତ ଥିଲେ । ବ୍ରୁଟସ୍ କିପରି ସେମାନଙ୍କ ଦଳରେ ଯୋଗ ଦେବେ, ଏହା ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । କାସିଅସ ବ୍ରୁଟସ୍‌ଙ୍କର ମନୋଭାବ ବୁଝିବାକୁ ଆସିଥିଲେ । ବ୍ରୁଟସ୍‌ଙ୍କର ବୀରତ୍ୱ, ଦେଶପ୍ରୀତି ଓ ସାହସ ବିଷୟରେ କାହାରି ସନ୍ଦେହ ନ ଥିଲା । ତାଙ୍କ ପରି ଜଣେ ଲୋକଙ୍କୁ ନିଜ ଦଳରେ ରଖିପାରିଲେ ସମସ୍ତେ ତାଙ୍କ କଥା ମାନି ଚଳିବେ ବୋଲି ଆଶା ଥିଲା ।

କାସିଅସ୍ ବ୍ରୁଟସ୍‌ଙ୍କର ମନୋଭାବର ସୂଚନା ପାଇ ତାଙ୍କୁ ଆହୁରି ଉତ୍ତେଜିତ କରିବାକୁ ଲାଗିଲେ । ସେ କହିଲେ, "ସିଜର୍ ସେ କାହିଁକି ନିଜକୁ ଅନ୍ୟମାନଙ୍କଠାରୁ ଏତେ ବଡ଼ ବୋଲି ମନେ-କରୁଛନ୍ତି ମୁଁ ବୁଝି ପାରୁନାହିଁ । ସେ ଯେପରି ସ୍ୱାଧୀନ ରୋମ୍‌ର ଜଣେ ସ୍ୱାଧୀନ ନାଗରିକ, ମୁଁ ସେହିପରି ସ୍ୱାଧୀନ, ତୁମେ ମଧ୍ୟ ସେହିପରି ସ୍ୱାଧୀନ । ସେ ଯେପରି ଦୁଃଖ କଷ୍ଟ ସହି ପାରନ୍ତି, ଆମେ ମଧ୍ୟ ସେହିପରି ସହିପାରୁ । ତେବେ ଆଜି ସିଜର୍ ମନୁଷ୍ୟ ନ ହୋଇ ଦେବତା । ସେ ମୋତେ ଟିକିଏ ଗୁହାଁଦେଲା ମାତ୍ରେ ମୁଁ କାହିଁକି ତାଙ୍କୁ ମୁଣ୍ଡ ନୁଆଇଁ ପ୍ରଣାମ କରିବି ?"

ଏହି ସମୟରେ ଦୂରରୁ ପୁଣି ଚିତ୍କାର ଶୁଣାଗଲା । ବ୍ରୁଟସ୍ ଟିକିଏ ବିଚଳିତ ହୋଇପଡ଼ିଲା ପରି ଜଣାଗଲେ । କାସିଅସ୍ କହିଲେ, "ବଡ଼ ଆଶ୍ଚର୍ଯ୍ୟର କଥା, ସିଜର୍ ଓ ବ୍ରୁଟସ୍—ଏ ଦୁଇଟି ନାଁକୁ ତୁଳନା କଲେ ସିଜର୍ ନାମଟିର ମୂଲ୍ୟ ଅଧିକ ହେବ କାହିଁକି ? ସିଜର୍‌ଙ୍କ ଖାଦ୍ୟ କଅଣ ଆମର ଖାଦ୍ୟଠାରୁ ମୂଲ୍ୟବାନ୍ ? ସେ କାହିଁକି ଆମଠାରୁ ଏତେ ଉଚ୍ଚରେ ରହିବେ ?"

ବ୍ରୁଟସ୍ ଟିକିଏ ଚିନ୍ତାକରି କହିଲେ, "ମୁଁ ଏ ବିଷୟ ଅନେକ ଥର ଭାବିଛି । ତୁମେ ଯାହା କହୁଛ, ମୁଁ ଭାବିଚିନ୍ତି ଦେଖିବି । ସିଜର୍ ଏଇ ବାଟେ ଫେରିବାର କଥା । ବର୍ତ୍ତମାନ ଆଉ ସେ ବିଷୟରେ ଚର୍ଚ୍ଚା କରିବା ଠିକ୍ ନୁହେଁ ।"

ଦୁହେଁ ପାଖ ଛିଡ଼ା ହୋଇଛନ୍ତି, ଏହି ସମୟରେ ଜୁଲିଅସ୍ ସିଜର୍ ସେଇ ବାଟେ ଫେରିଲେ । ତାଙ୍କ ସାଥିରେ କାସ୍କା ଥିଲେ । କାସ୍କା କାସିଅସ୍‌ଙ୍କ ଦଳର ଲୋକ । ବ୍ରୁଟସ୍ ଓ କାସିଅସ୍ ଦେଖିଲେ ଯେ ସିଜର୍‌ଙ୍କ ମୁହଁରେ ବିରକ୍ତିର ଚିହ୍ନ । ସେମାନେ କାସ୍କାଙ୍କଠାରୁ ଶୁଣିଲେ ଯେ ମାର୍କ ଆଣ୍ଟୋନି ଏହି କ୍ରୀଡ଼ା କୌତୁକରେ ଯୋଗ

ଦେଇଥିଲେ । ସେ ସିଜର୍‌ଙ୍କୁ ଥର ଥର କରି ତିନି ଥର ରାଜମୁକୁଟ ଅର୍ପଣ କରିଥିଲେ । ସିଜର୍ ରାଜମୁକୁଟ ପିନ୍ଧିବାକୁ ମନା କରିଥିଲେ ସତ; ମାତ୍ର ତାଙ୍କର ଅସ୍ୱୀକାର କରିବାର ଭଙ୍ଗୀରୁ ଜଣା ପଡ଼ୁଥିଲା ଯେ ସେ ରଜା ହେବାକୁ ଇଚ୍ଛୁକ ।

ବ୍ରୁଟସ୍ ତହୁଁ ପଚାରିଲେ, "ତେବେ ଲୋକମାନେ କାହିଁକି ଏପରି ଚିତ୍କାର କରୁଥିଲେ ?" କାସ୍କା ଉତ୍ତର ଦେଲେ, "ସିଜର୍ ରାଜମୁକୁଟ ପିନ୍ଧିବାକୁ ମନା କରିବାରୁ ଲୋକେ ତାଙ୍କର ପ୍ରଶଂସା କରି ଚିତ୍କାର କଲେ । ସେଥିପାଇଁ ସିଜର୍ ମନେ ମନେ ବିରକ୍ତ । ମୋର ମନେ ହୁଏ, ଆଉଥରେ କହିଥିଲେ ସିଜର୍ ରାଜ-ମୁକୁଟ ଗ୍ରହଣ କରିଥାନ୍ତେ ।"

ବ୍ରୁଟସ୍ ସେ ସ୍ଥାନ ତ୍ୟାଗ କରି ଘରକୁ ଚଲେ; କିନ୍ତୁ ତାଙ୍କ ମନ ନାନା ଚିନ୍ତାରେ ପୂରିଥାଏ । ରାତିରେ ତାଙ୍କୁ ଆଦୌ ନିଦ ହେଲା ନାହିଁ । କଅଣ କରିବାକୁ ହେବ ସେ ସ୍ଥିର କରି ପାରିଲେ ନାହିଁ । ସିଜର୍‌ଙ୍କର ଗର୍ବ ଭାଙ୍ଗିବାର ଉପାୟ କଅଣ ? ସିଜର୍‌ଙ୍କ ଗର୍ବ ଖର୍ବ ନ କଲେ ରୋମ୍‌ର ଆଉ ରକ୍ଷା ନାହିଁ । ଥରେ ସିଜର୍ ରୋମ୍‌ର ରାଜା ହୋଇ ସବୁ କ୍ଷମତା ହାତକୁ ନେଲେ କଅଣ କରିବେ କିଏ କହିପାରେ ? ସେ ମନେ ମନେ ସ୍ଥିର କଲେ ଯେ ରୋମ୍‌କୁ ରକ୍ଷା କରିବାକୁ ହେଲେ ସିଜର୍‌ଙ୍କୁ ହତ୍ୟା କରିବାକୁ ହେବ ।

ରାତି ଅଧ । ବ୍ରୁଟସ୍‌ଙ୍କ ଆଖିରେ ନିଦ ନାହିଁ । ଏହି ସମୟରେ କାସିଅସ୍ ଓ ତାଙ୍କ ଦଳର କାସ୍କା, ଡେସିଅସ୍ ପ୍ରଭୃତି ଆସି ବ୍ରୁଟସ୍‌ଙ୍କ ଘରେ ଉପସ୍ଥିତ ହେଲେ । ଅନେକ ବେଳ ଯାଏ ପରାମର୍ଶ ଚାଲିଲା । ଶେଷରେ ସ୍ଥିର ହେଲା ଯେ ସିଜରଙ୍କୁ ହତ୍ୟା କରିବାକୁ ହେବ । ତା ପରଦିନ ସିଜର୍ ଟାଉନ୍ ହଲ୍‌ରେ ଲୋକମାନଙ୍କୁ ଗୋଟିଏ ଭାଷଣ ଦେବାର କଥା । ସେହିଠାରେ ତାଙ୍କୁ ହତ୍ୟା କରାଯିବ ବୋଲି ସ୍ଥିର

ହେଲା । ପୁଣି ବିଚାର ପଡ଼ିଲା—ଏକା ସିଜର୍‌ଙ୍କୁ ହତ୍ୟା କରାଯିବ କି ମାର୍କ ଆଣ୍ଟୋନିଙ୍କ ଭଳି ତାଙ୍କର ସମର୍ଥକମାନଙ୍କୁ ମଧ୍ୟ ହତ୍ୟା କରାଯିବ ।

କାସିଅସ୍ ପ୍ରସ୍ତାବ କଲେ ଯେ ମାର୍କ ଆଣ୍ଟୋନିଙ୍କୁ ମଧ୍ୟ ହତ୍ୟା କରିବା ଦରକାର; କାରଣ ସେ ସିଜର୍‌ଙ୍କର ଅନ୍ତରଙ୍ଗ ବନ୍ଧୁ । ଆହୁରି ମଧ୍ୟ ସେ ବଡ଼ କୌଶଳୀ । ସେ ବଞ୍ଚି ରହିଲେ ସିଜର୍‌ଙ୍କ ଅନ୍ତେ ଦଳର ପ୍ରବଳ ଶତ୍ରୁ ହୋଇ ରହିବେ ।

ଏହା ଶୁଣି ବ୍ରୁଟସ କହିଲେ, "ଆଣ୍ଟୋନି ସିଜର୍‌ଙ୍କର ଗୋଟିଏ ହାତ ମାତ୍ର । ସିଜର୍‌ଙ୍କ ମୁଣ୍ଡ ଗଲେ ହାତଟା କଅଣ କରି ପାରିବ ! ସିଜର୍‌ଙ୍କୁ ହତ୍ୟା ନ କରି ତାଙ୍କର ଗର୍ବକୁ ଦୂର କରିବା ମୋର ଇଚ୍ଛା; କିନ୍ତୁ ତାହା ସମ୍ଭବପର ନୁହେଁ । ତେଣୁ ସିଜର୍‌ଙ୍କର ପ୍ରାଣ ନେବାକୁ ହେବ । କିନ୍ତୁ କ୍ରୋଧର ବଶବର୍ତ୍ତୀ ହେବା ଉଚିତ ନୁହେଁ । ସିଜର୍‌ଙ୍କୁ ବଧ କରିବାକୁ ହେବ । ସାହସର ସହିତ ତାହା କରିବା; କିନ୍ତୁ ସେଥିପାଇଁ କ୍ରୋଧକୁ ମନରେ ସ୍ଥାନ ଦେବା ଉଚିତ ହେବ ନାହିଁ ।"

ବ୍ରୁଟସ୍‌ଙ୍କ କଥା ସମସ୍ତଙ୍କ ମନକୁ ପାଇଲା । କେବଳ ସିଜର୍‌ଙ୍କୁ ଟାଉନ୍‌ହଲରେ ହତ୍ୟା କରାଯିବ ବୋଲି ସ୍ଥିର ହେଲା ।

ସେଦିନ ରାତିରେ ମେଘୁଆ ପାଗ ହୋଇଥିଲା । କୃଷ୍ଣପକ୍ଷର ଅନ୍ଧାର ରାତି, ବେଳେ ବେଳେ ବିଜୁଳି ମାରୁଥାଏ, ଘଡ଼ଘଡ଼ି ଶୁଣା ଯାଉଥାଏ । ଜୁଲିଅସ୍ ସିଜର୍‌ଙ୍କୁ ରାତି ସାରା ନିଦ ହେଲା ନାହିଁ ।

ସକାଳୁ ଉଠି ସିଜର୍ ନିତ୍ୟକର୍ମ ଶେଷକରି ଟାଉନ୍‌ହଲ୍‌କୁ ଯିବାକୁ ପ୍ରସ୍ତୁତ ହେଲେ । ଏହି ସମୟରେ ତାଙ୍କର ସ୍ତ୍ରୀ କାଲପୁର୍ଣ୍ଣିଆ ଆସି କହିଲେ, "ଆଜି ତୁମେ ଘରୁ କୁଆଡ଼େ ଯାଅ ନାହିଁ । କାଲି ରାତିରେ ମୁଁ ବଡ଼ ଖରାପ ସ୍ୱପ୍ନ ଦେଖିଛି ।" ସିଜର୍ ପଚାରିଲେ,

"କି ସ୍ୱପ୍ନ ଦେଖିଲ ?" କାଲପୁର୍ଣ୍ଣିଆ କହିଲେ, "ମୁଁ ସ୍ୱପ୍ନରେ ଦେଖିଲି, ବଜାର ଛକରେ ତୁମର ଯେଉଁ ମୂର୍ତ୍ତି ଅଛି ସେଥିରୁ ରକ୍ତ ବୋହିଯାଉଛି, ଆଉ ଲୋକମାନେ ହସି ହସି ସେ ରକ୍ତରେ ନିଜ ନିଜ ହାତ ଧୋଉଅଛନ୍ତି । ଖାଲି ସେତିକି ନୁହେଁ, କାଲି ରାତିରେ ରୋମ୍‌ରେ ଅନେକ ବିଚିତ୍ର ଘଟଣା ଘଟିଛି । ଜଣେ ଲୋକ ବଜାର ଛକରେ ଗୋଟାଏ ସିଂହ ଦେଖିଛି । ଲୋକେ କହୁଛନ୍ତି ଯେ କବର-ଖାନାରୁ ଶବଗୁଡ଼ାକ ବାହାରି ବୁଲୁଥିଲେ । ଆକାଶରେ ଯୁଦ୍ଧର ଶବ୍ଦ ଶୁଣାଯାଉଥିଲା । ଏ ସବୁର କିଛି କାରଣ ବୁଝି ହେଉ ନାହିଁ । ମୋର କୌଣସି ଅନ୍ଧବିଶ୍ୱାସ ନ ଥିଲା; ମାତ୍ର ଏ ସବୁ ଦେଖି ଶୁଣି ମୋର କାହିଁକି ଭୟ ହେଉଛି । ନିଶ୍ଚୟ ଗୋଟାଏ କିଛି ଭୟଙ୍କର ଘଟଣା ଘଟିବ ବୋଲି ମୋର ଆଶଙ୍କା । ତେଣୁ ତୁମକୁ ଯିବା ପାଇଁ ମୁଁ ମନା କରୁଛି ।"

ସିଜର୍ କହିଲେ, "ମୁଁ ଏ ସବୁରେ ବିଶ୍ୱାସ କରେନାହିଁ । ଯଦି ଏଥିରୁ କୌଣସି ବିପଦର ସୂଚନା ମିଳୁଥାଏ, ତେବେ ସେ ବିପଦ ମୋ ଉପରେ ପଡ଼ିବ ବୋଲି ତୁମ୍ଭେ ଭାବୁଛ କାହିଁକି ? ହୁଏତ ସମଗ୍ର ରୋମ୍ ଉପରେ କିମ୍ବା ପୃଥିବୀର କୌଣସି ଠାରେ କିଛି ବିପଦ ଘଟିପାରେ । ସେଥିପାଇଁ ତୁମ୍ଭର ଭୟ କରିବାର କାରଣ ନାହିଁ । ତୁମେ ନିଶ୍ଚିନ୍ତ ରହିପାର ।"

ମାତ୍ର କାଲପୁର୍ଣ୍ଣିଆ ଏଥିରେ ନିଶ୍ଚିନ୍ତ ହୋଇ ପାରିଲେ ନାହିଁ । ସେ କହିଲେ, "ଆକାଶରେ ଲାଞ୍ଜୁଆତାରା ପଡ଼ିଲେ ରାଜା ମହାରାଜାଙ୍କର ମୃତ୍ୟୁ ହୁଏ । ହଜାର ହଜାର ଭିକାରି ମଲେ ବି ଲାଞ୍ଜୁଆତାରା ଦେଖାଯାଏନି । କେବଳ ବଡ଼ଲୋକଙ୍କ ମୃତ୍ୟୁ ଆଗରୁ ତାର ସୂଚନା ମିଳିଥାଏ ।"

ସିଜର୍ ସେଦିନ ଟାଉନ୍‌ହଲ୍‌କୁ ଯିବେ ନାହିଁ ବୋଲି ସ୍ଥିର କଲେ ।

ଏଣେ ସିଜର୍‌ଙ୍କର ବିରୋଧୀଦଳର ଲୋକେ ଦେଖିଲେ ଯେ ସମୟ ହୋଇଗଲାଣି ଅଥଚ ସିଜର୍‌ଙ୍କର ଦେଖାନାହିଁ । ତେଣୁ କାସିଅସ୍ ଡେସିଅସ୍‌ଙ୍କୁ ସିଜର୍‌ଙ୍କ ଘରକୁ ପଠାଇଲେ । ସେ ଆସି ସିଜର୍‌ଙ୍କୁ ଡାକିବାରୁ ସେ କହିଲେ, "ମୁଁ ଆଜି ସଭାକୁ ଯିବିନାହିଁ ।" ଡେସିଅସ୍ ଏଥିର କାରଣ ପଚାରିବାରୁ ସିଜର୍ କହିଲେ, "ଅବଶ୍ୟ ମୁଁ ନ ଯିବାର କାରଣ ଜଣାଇବାକୁ ବାଧ୍ୟ ନୁହେଁ । ବନ୍ଧୁ ଭାବରେ ମୁଁ ତୁମକୁ ସେ କାରଣଟି କହୁଛି । କାଲି ରାତିରେ ମୋର ସ୍ତ୍ରୀ ଗୋଟିଏ ଦୁଃସ୍ୱପ୍ନ ଦେଖି ମୋତେ ଯିବାକୁ ମନାକରିଛନ୍ତି ।" ଡେସିଅସ୍ ହସି ହସି କହିଲେ, "ମୁଁ ଦେଖୁଛି ଯେ ଆପଣଙ୍କ ସ୍ତ୍ରୀ ସ୍ୱପ୍ନଟିର ପ୍ରକୃତ ଅର୍ଥ ବୁଝିପାରି ନାହାନ୍ତି । ଏହାର ଅର୍ଥ ହେଉଛି ରୋମର୍ ଲୋକେ ସିଜର୍‌ଙ୍କ ରକ୍ତରୁ ଆହୁରି ଆନନ୍ଦ ପାଇବେ; ଅର୍ଥାତ୍ ସିଜର୍ ଆହୁରି ରାଜ୍ୟ ଜୟ କରିବେ; ରୋମ୍‌ର ଲୋକେ ତାଙ୍କ ଶାସନରେ ଆହୁରି ଅଧିକ ସୁଖ ଭୋଗ କରିବେ ।"

"ମୁଁ ଶୁଣିବାକୁ ପାଉଛି ଯେ ଆଜି ଲୋକେ ସିଜର୍‌ଙ୍କୁ ରାଜମୁକୁଟ ଅର୍ପଣ କରିବେ । ଆଜି ଆପଣ ନ ଗଲେ ସେମାନେ କଅଣ ମନେ କରିବେ ? ପୁଣି ସେମାନେ ଏ ଦୁଃସ୍ୱପ୍ନ କଥା ଶୁଣିଲେ ଥଟ୍ଟା କରି କହିବେ, 'ସିଜର୍‌ଙ୍କ ସ୍ତ୍ରୀ ଭଲ ସ୍ୱପ୍ନ ଦେଖିବାଯାଏ ଅପେକ୍ଷା କର ।' ସେମାନେ ମନେକରିବେ ଯେ ସିଜର୍ ଜଣେ ଭୀରୁ କାପୁରୁଷ । ଏତେ ଅନ୍ଧବିଶ୍ୱାସୀ ଯେ ଗୋଟାଏ ସ୍ୱପ୍ନକଥା ଶୁଣି ଭୟରେ ଘରେ ଲୁଚି ରହିଛନ୍ତି ।"

ଡେସିଅସ୍ ସିଜର୍‌ଙ୍କ ପ୍ରକୃତି ଜାଣିଥିଲେ । ସିଜର୍ ବଡ଼ ଅଭିମାନୀ । ତାଙ୍କୁ ଭୀରୁ ବୋଲି କହିଲେ ସେ କେବେ ସହି ପାରିବେ ନାହିଁ; ନିଶ୍ଚୟ ସଭାକୁ ଆସିବେ ।

ସିଜର୍ କାଲପୁର୍ଣ୍ଣିଆଙ୍କୁ କହିଲେ, "ଏବେ ବୁଝିପାରୁଥିବ ତୁମର ସନ୍ଦେହ କେପରି ଅମୂଳକ । ମୁଁ ତୁମ କଥାରେ ରାଜି ହୋଇ ନ ଯିବାକୁ ଭାବିଥିଲି । ବାସ୍ତବରେ ସଭାକୁ ନ ଯିବା ମୋ ପକ୍ଷରେ ଘୋର ଲଜ୍ଜାର କଥା ହେବ ।"

ଏହା କହି ସିଜର୍ ଡେସିଅସ୍‌ଙ୍କ ସଙ୍ଗେ ଟାଉନ୍‌ହଲ୍‌କୁ ବାହାରିଗଲେ ।

ସିଜର୍ ଆଗରୁ କାହାକୁ ଲବମାତ୍ର ସନ୍ଦେହ କରି ନ ଥିଲେ । ତାଙ୍କର ବନ୍ଧୁମାନେ ମଧ୍ୟ ତାଙ୍କ ବିରୋଧରେ କାର୍ଯ୍ୟ କରୁଛନ୍ତି ବୋଲି ତାଙ୍କର ଆଦୌ ଧାରଣା ନଥିଲା । ଟାଉନ୍‌ହଲ୍‌ରେ ତାଙ୍କର ବିରୋଧୀମାନେ ଗୋଟାଏ ଗୋଟାଏ କିଛି ଆଳକରି ତାଙ୍କ ଗୃହପାଖେ ବେଢ଼ି ରହିଲେ । ସିଜର୍‌ଙ୍କ ସଙ୍ଗେ କଥାବାର୍ତ୍ତା କରିବା ବାହାନାରେ ସେମାନେ ତାଙ୍କୁ ଏପରି ବେଢ଼ି ରହିଲେ ଯେ ଅନ୍ୟ କେହି ପାଖରେ ରହିଲେ ନାହିଁ । ହଠାତ୍ କାସ୍କା ଖଣ୍ଡା ବାହାର କରି ସିଜର୍‌ଙ୍କ ପିଠିରେ ଆଘାତ କଲେ । ଅନ୍ୟମାନେ ନିଜ ନିଜ ଅସ୍ତ୍ର ବାହାର କରି ସିଜର୍‌ଙ୍କୁ ଆକ୍ରମଣ କଲେ । ସିଜର୍ ଶତ୍ରୁମାନଙ୍କଦ୍ୱାରା ଆକ୍ରାନ୍ତହୋଇ ମଧ୍ୟ ସାହସ ନ ହରାଇ ନିଜ ଅସ୍ତ୍ରଦ୍ୱାରା ଆତ୍ମରକ୍ଷା କରିବାକୁ ଚେଷ୍ଟାକଲେ । ଏହି ସମୟରେ ସିଜର୍‌ଙ୍କର ଅନ୍ତରଙ୍ଗବନ୍ଧୁ ବ୍ରୁଟସ୍ ମଧ୍ୟ ଖଣ୍ଡାରେ ତାଙ୍କୁ ଆଘାତକଲେ । ସିଜର୍ ନିଜର ବନ୍ଧୁଙ୍କୁ ଶତ୍ରୁମାନଙ୍କ ମଧ୍ୟରେ ଦେଖିଲାକ୍ଷଣି ନିଜର ଖଣ୍ଡା ଫିଙ୍ଗିଦେଇ କହିଲେ, "ହାୟ, ତୁମେ ବନ୍ଧୁ ବ୍ରୁଟସ ମଧ୍ୟ ଏମାନଙ୍କ ମଧ୍ୟରେ ଅଛ ? ତେବେ ସିଜର୍‌ର ମୃତ୍ୟୁ ବାଞ୍ଛନୀୟ ।" ଏତିକି ମାତ୍ର କହି ସିଜର୍ ତଳେ ପଡ଼ିଗଲେ ଓ ତାଙ୍କର ପ୍ରାଣବାୟୁ ବାହାରିଗଲା ।

ରୋମର୍ ଲୋକସାଧାରଣ ଏହି ଷଡ଼ଯନ୍ତ୍ର ବିଷୟରେ ଆଗରୁ କିଛି ସୂଚନା ପାଇନଥିଲେ । ଟାଉନ୍‌ହଲ୍ ଭିତରେ ସିଜର୍‌ଙ୍କ

ହତ୍ୟାକାଣ୍ଡରେ ସେମାନେ ଯେତିକ ବିମ୍ମିତ ହେଲେ, ସେତିକ ଖୁବ୍ ତବସ୍ତ ମଧ୍ୟ ହୋଇପଡ଼ିଲେ । ସିନ୍ନା ଚିତ୍କାର କରି କହିଲେ,"ସିଜର୍ ଏବେ ମୃତ । ସ୍ୱାଧୀନତା ଫେରିଆସିଛି ।" ହତ୍ୟାକାରୀମାନେ ପାଗଳପରି ମାଡ଼ଆସ ସିଜର୍ଙ୍କ ରକ୍ତରେ ନିଜ ନିଜର ହାତକୁ ରଞ୍ଜିତ କରି ହଲ୍‌ରୁ ବାହାରିଗଲେ । ଗଲିବେଳେ ଲୋକେ ପରସ୍ପରକୁ ମାଡ଼ି ଠେଲି ଯାଉଥାନ୍ତି । ଲୋକଙ୍କ ଭିତରେ ଭୟ ଓ ଉତ୍ତେଜନା ଖେଳିଗଲା । ଘଟଣା କେଉଁ ଆଡ଼କୁ ଗତିକରୁଛି କେହି କିଛି ବୁଝିପାରୁ ନ ଥାନ୍ତି । ବ୍ରୁଟସ୍ ଦେଖିଲେ ଯେ ଅବସ୍ଥା ଅସମ୍ଭାଳ ହୋଇପଡ଼ୁଛି । ତେଣୁ ପ୍ରଥମେ ଲୋକଙ୍କୁ ଶାନ୍ତକରିବା ଦରକାର ବୋଲି ବ୍ରୁଟସ୍ ବୁଝିପାରିଲେ । ସେ ଲୋକମାନଙ୍କୁ ସମ୍ବୋଧନ କରି କହିଲେ, "ଆପଣମାନେ ଶାନ୍ତ ହୁଅନ୍ତୁ । ଭୟ କରି ପଳାଇବାର କୌଣସି କାରଣ ନାହିଁ । ସିଜର୍ ତାଙ୍କ ଗର୍ବର ପ୍ରାୟଶ୍ଚିତ୍ତ କରି ସାରିଛନ୍ତି । କୌଣସି ରୋମ୍‌ବାସୀର ଲବମାତ୍ର କ୍ଷତି କରିବା ଆମର ଉଦ୍ଦେଶ୍ୟ ନୁହେଁ ।"

ବ୍ରୁଟସ୍‌ଙ୍କର କଥା ଶୁଣି ଲୋକମାନେ ସ୍ଥିରହୋଇ ରହିଲେ । ତହୁଁ ବ୍ରୁଟସ୍ ସେମାନଙ୍କୁ କହିଲେ, "ଆପଣମାନେ ଧୀର ସ୍ଥିର ଭାବରେ ବଜାର ଛକ ପାଖକୁ ଚାଲନ୍ତୁ । ସେଠାରେ ମୁଁ ଆପଣମାନଙ୍କୁ ସବୁକଥା ବୁଝାଇ କହିବ । ଭୟର କିଛି କାରଣ ନାହିଁ ।" ତହୁଁ ଲୋକମାନେ ବଜାର ଛକକୁ ଚାଲିଗଲେ ।

ଏହିମଧ୍ୟରେ ମାର୍କ ଆଣ୍ଟୋନି ଟାଉନ୍‌ହଲ୍‌ରେ ଉପସ୍ଥିତ ହୋଇ ବ୍ରୁଟସଙ୍କୁ ଅଭିମାନ କରି ଅନେକ କଥା କହିଲେ । ଶେଷରେ ସେ କହିଲେ, "ଆପଣମାନେ ସିଜର୍‌ଙ୍କୁ ହତ୍ୟା କରିଛନ୍ତି । ଆଉ କାହାକୁ ହତ୍ୟା କରିବା ଆପଣମାନଙ୍କର ଉଦ୍ଦେଶ୍ୟ ମୁଁ ଜାଣେନାହିଁ । ମାତ୍ର ଯେବେ ମୋତେ ହତ୍ୟାକରିବା ଆପଣ-

ମାନଙ୍କର ଅଭିପ୍ରାୟ ହୋଇଥାଏ, ତେବେ ମୋତେ ଏହି ମୁହୂର୍ତ୍ତରେ ହତ୍ୟାକରନ୍ତୁ । ସିଜରଙ୍କ ମୃତ୍ୟୁ ସମୟରେ ମୃତ୍ୟୁଲାଭ କଲେ ମୁଁ ନିଜକୁ ଧନ୍ୟ ମନେକରିବି । ମୋ ପକ୍ଷରେ ମରିବାପାଇଁ ଏହାଠାରୁ ବଳି ଆଉ ଶୁଭମୁହୂର୍ତ୍ତ ମିଳି ନ ପାରେ । ମୋତେ ଏହିକ୍ଷଣି ଏହିଠାରେ ହତ୍ୟାକର ।”

ବ୍ରୁଟସ୍ ଆଣ୍ଟୋନିଙ୍କୁ ଶାନ୍ତକରି ଧୀର ସ୍ୱରରେ କହିଲେ, “ଭାଇ ଆଣ୍ଟୋନି, ତୁମକୁ ବଧ କରିବାର ପ୍ରଶ୍ନ କାହିଁକି ? ଆମେ ସିଜର୍‌ଙ୍କୁ ହତ୍ୟା କରିଛୁ ସତ, କିନ୍ତୁ କାହିଁକି ? ସିଜର୍ ତୁମର ଯେପରି ବନ୍ଧୁ, ମୋର ଠିକ୍ ସେହିପରି ବନ୍ଧୁ । କିନ୍ତୁ ରୋମ୍‌ର ମଙ୍ଗଳପାଇଁ, ରୋମ୍‌ର ସ୍ୱାଧୀନତାପାଇଁ ସିଜରଙ୍କୁ ପ୍ରାଣବଳି ଦେବାକୁ ହେଲା । ତୁମ ପାଇଁ ଆମର ଖଣ୍ଡାର ଆବଶ୍ୟକତା ନାହିଁ । ଆମ ହୃଦୟରେ ତୁମ ପ୍ରତି ଭ୍ରାତୃଭାବ ପୂରିରହିଛି । ଟିକିଏ ଧୈର୍ଯ୍ୟ ଧର । ଆଗେ ମୁଁ ଲୋକମାନଙ୍କୁ ଶାନ୍ତ କରିଦିଏଁ । ତା’ପରେ ମୁଁ କାହିଁକି ମୋର ପ୍ରାଣପ୍ରତିମ ବନ୍ଧୁ ସିଜର୍‌ଙ୍କୁ ହତ୍ୟାକଲି ବୁଝାଇଦେବି ।”

ମାର୍କ ଆଣ୍ଟୋନି କହିଲେ, “ମୁଁ ସିଜର୍‌ଙ୍କୁ କେତେ ଭଲ ପାଉଥିଲି, ତାହା ସମସ୍ତେ ଜାଣନ୍ତି । ମୁଁ ଧୈର୍ଯ୍ୟଧରି ଆପଣଙ୍କ କଥା ଶୁଣିବାକୁ ପ୍ରସ୍ତୁତ । ସିଜର୍ କିପରି ଓ କାହିଁକି ରୋମ୍‌ର ବିପଦର କାରଣ ଥିଲେ ମୋତେ ବୁଝାଇ ଦିଅନ୍ତୁ । ତାହାହେଲେ ମୁଁ ଆପଣଙ୍କ ସହିତ ବନ୍ଧୁଭାବ ରଖିବି । ଆପଣ ବର୍ତ୍ତମାନ ମୋତେ ଅନୁମତି ଦିଅନ୍ତୁ ଯେ ମୁଁ ସିଜର୍‌ଙ୍କ ଶବକୁ ବଜାର ଛକକୁ ନେଇ ସେଠାରେ ଲୋକ ସାଧାରଣଙ୍କୁ ଗୋଟିଏ ବକ୍ତୃତା ଦେବି ।”

ବ୍ରୁଟସ୍ ଆଣ୍ଟୋନିଙ୍କ ପ୍ରସ୍ତାବରେ ସ୍ୱୀକୃତ ହେଲେ ।

ଆଣ୍ଟୋନି ସିଜର୍‌ଙ୍କ ଶବ ନିକଟରେ ଜାନୁପାତକରି କହିଲେ, “ବନ୍ଧୁ ସିଜର, ଏବେ ତମେ ରକ୍ତାକ୍ତ ମାଟିପିଣ୍ଡ ମାତ୍ର । ମୋତେ

କ୍ଷମା ଦିଅ । ମୁଁ ତୁମ ନିକଟରେ ଘୋର ଅପରାଧୀ । ଯେଉଁ ଆତତାୟୀମାନେ ତୁମକୁ ହତ୍ୟାକଲେ, ସେମାନଙ୍କ ନିକଟରେ ମୁଁ ନତମସ୍ତକ ହୋଇଛି । ଏହା ମୋର ଏକ ଘୋର ଅପରାଧ । ତୁମେ ଏ ଯୁଗର ଶ୍ରେଷ୍ଠ ମାନବ ଥିଲ । ତୁମର ହତ୍ୟାକାରୀଙ୍କ ଉପରେ ପ୍ରତିଶୋଧ ନେବା ମୋର କର୍ତ୍ତବ୍ୟ । ତୁମର ଶତ୍ରୁମାନେ ଦସ୍ୟୁର ପାପ ଭୋଗନ୍ତୁ ।"

ଏହାପରେ କହି ସେ କେତେଜଣ ଲୋକଙ୍କୁ ଆଦେଶ ଦେଲେ, "ସିଜର୍‌ଙ୍କ ଶବକୁ ବଜାର ଛକକୁ ନେଇଯାଅ ।"

ସିଜର୍‌ଙ୍କ ଶବ ସହିତ ଆଣ୍ଟୋନି ବଜାର ଛକରେ ପହଞ୍ଚିଲେ । ସେତେବେଳକୁ ବହୁତ ଲୋକ ସେଠାରେ ରୁଣ୍ଡ ହୋଇଯାଇଥିଲେ । ବ୍ରୁଟସ୍ ସେମାନଙ୍କୁ ବୁଝାଇ କହୁଥିଲେ, "ଆପଣମାନେ ମୋର କଥା ଶୁଣନ୍ତୁ । ଯଦି ଏଠାରେ ସିଜର୍‌ଙ୍କର କେହି ପ୍ରିୟବନ୍ଧୁ ଥାଆନ୍ତି ତାଙ୍କୁ ମୁଁ କହିପାରେ ଯେ ବ୍ରୁଟସ୍‌ର ସିଜର୍‌ଙ୍କ ସହିତ ଯେଉଁ ବନ୍ଧୁତା, ତାହା ତାଙ୍କର ବନ୍ଧୁତାଠାରୁ ଊଣା ନ ଥିଲା । ସିଜର୍‌ଙ୍କର ସେହି ବନ୍ଧୁ ପଚାରି ପାରନ୍ତି—'ତେବେ ତୁମେ ସିଜର୍‌ଙ୍କ ବିରୋଧରେ ଗଲ କାହିଁକି ?' ମୋର ଉତ୍ତର ହେଉଛି—ମୁଁ ସିଜର୍‌ଙ୍କୁ କମ୍ ଶ୍ରଦ୍ଧା କରୁନଥିଲି; କିନ୍ତୁ ରୋମ୍‌କୁ ମୁଁ ସିଜର୍‌ଙ୍କଠାରୁ ଅଧିକ ଶ୍ରଦ୍ଧା କରେ । ଆପଣମାନେ କଅଣ ଚାହାନ୍ତି ଯେ ସିଜର୍ ବଞ୍ଚିଥାଆନ୍ତେ ଆଉ ଆପଣମାନେ ଦାସ ଭାବରେ ମରୁଥାଆନ୍ତେ ? ନାଁ, ସିଜର୍ ମରନ୍ତୁ ପଛକେ ଆପଣମାନେ ସ୍ୱାଧୀନ ଭାବରେ ବଞ୍ଚିରହନ୍ତୁ । ଆପଣମାନେ କଅଣ ଚାହାନ୍ତି ? ସିଜର୍ ମୋତେ ଶ୍ରଦ୍ଧା କରୁଥିଲେ । ତାଙ୍କ ମୃତ୍ୟୁରେ ମୋର ଚକ୍ଷୁରୁ ଲୋତକ ବହୁଛି । ସିଜର୍ ଭାଗ୍ୟବାନ୍ ଥିଲେ; ସେଥିପାଇଁ ମୁଁ ଆନନ୍ଦ ଅନୁଭବ କରୁଛି । ସିଜର୍ ସାହସୀ ବୀର ଥିଲେ; ସେଥିପାଇଁ ମୁଁ ତାଙ୍କୁ ସମ୍ମାନ ପ୍ରଦର୍ଶନ କରୁଛି । କିନ୍ତୁ

ତାଙ୍କର ଗର୍ବ ପାଇଁ, ତାଙ୍କର ଅହମିକା ପାଇଁ ମୁଁ ତାଙ୍କୁ ହତ୍ୟା କରିଛି । ତାଙ୍କର ସ୍ନେହ ପାଇଁ ଅଶ୍ରୁ, ତାଙ୍କର ସୌଭାଗ୍ୟ ପାଇଁ ଆନନ୍ଦ, ତାଙ୍କର ବୀରତ୍ୱ ପାଇଁ ସମ୍ମାନ ଅଛି; କିନ୍ତୁ ତାଙ୍କର ଗର୍ବ ପାଇଁ, ଅହମିକା ପାଇଁ ମୃତ୍ୟୁ । ସଂକ୍ଷେପରେ ମୁଁ କହିପାରେ ଯେ ରୋମ୍‌ର ମଙ୍ଗଳ ପାଇଁ ମୁଁ ମୋର ଶ୍ରେଷ୍ଠ ବନ୍ଧୁଙ୍କୁ ହତ୍ୟା କରିଛି । ଯଦି ଦେଶପାଇଁ ମୋର ମୃତ୍ୟୁ ଆବଶ୍ୟକ ହୁଏ, ତେବେ ଦେଶବାସୀ ସ୍ୱଚ୍ଛନ୍ଦରେ ଏହି ଖଣ୍ଡାରେ ମୋତେ ବଧ କରିପାରନ୍ତି ।"

ବ୍ରୁଟସ୍ ଏପରି ଭାବରେ ଲୋକଙ୍କୁ ବୁଝାଇଲେ ଯେ ସେମାନେ ବ୍ରୁଟସ୍‌ଙ୍କୁ ପ୍ରଶଂସା କଲେ । ବ୍ରୁଟସ୍ ଯେ କି ଉଚ୍ଚ ଆଦର୍ଶର ବଶବର୍ତ୍ତୀ ହୋଇ ନିଜର ବନ୍ଧୁଙ୍କୁ ହତ୍ୟା କରିଥିଲେ, ତାହା ହୁଏତ ଅନେକେ ବୁଝିପାରି ନଥିଲେ; କିନ୍ତୁ ବ୍ରୁଟସ୍ ଯେ ଜଣେ ସାଧୁଲୋକ, ତାଙ୍କର କୌଣସି ଅସତ୍ ଉଦ୍ଦେଶ୍ୟ ନଥିଲା ଏ ବିଷୟରେ କାହାରି ସନ୍ଦେହ ହୋଇ ନ ଥିଲା । ଲୋକେ ଚିତ୍କାର କଲେ, "ବ୍ରୁଟସ୍ ଦୀର୍ଘଜୀବୀ ହୁଅନ୍ତୁ ।"

ମାର୍କ ଆଣ୍ଟୋନି ସିଜର୍‌ଙ୍କ ଶବକୁ ନେଇ ସେଠାରେ ଉପସ୍ଥିତ ହେବାରୁ ଲୋକେ ପୁଣି ନୀରବ ହୋଇଗଲେ । ବ୍ରୁଟସ୍ ଲୋକମାନଙ୍କୁ କହିଲେ, "ଆଣ୍ଟୋନି ଆପଣମାନଙ୍କୁ ସିଜର୍‌ଙ୍କ ମୃତ୍ୟୁ ବିଷୟରେ ଏକ ଭାଷଣ ଦେବେ । ଧୀର ସ୍ଥିର ଭାବରେ ଶୁଣନ୍ତୁ ।"

ଆଣ୍ଟୋନି ମଧ୍ୟ ବ୍ରୁଟସ୍‌ଙ୍କ ପରି ଜଣେ ସୁନ୍ଦର ବକ୍ତା ଥିଲେ । ସେ କହିଲେ, "ବନ୍ଧୁଗଣ, ରୋମ୍‌ବାସୀଗଣ, ମୋର ପ୍ରିୟ ଦେଶବାସୀ-ଗଣ, ଅନୁଗ୍ରହ କରି ମୋର ଭାଷଣ ଶୁଣନ୍ତୁ । ମୁଁ ସିଜର୍‌ଙ୍କ ଶବକୁ କବର ଦେବା ପାଇଁ ଆସିଛି, ତାଙ୍କର ପ୍ରଶଂସା ଗାଇବାକୁ ଆସିନାହିଁ । ଲୋକେ ଜୀବଦ୍ଦଶାରେ ଯେଉଁ ଅନ୍ୟାୟ କରିଥାନ୍ତି, ସେମାନଙ୍କ ମୃତ୍ୟୁ ପରେ ମଧ୍ୟ ତାହା ରହି ଯାଇଥାଏ; ମାତ୍ର ସେମାନେ ଯେଉଁ ସତ୍‌କାର୍ଯ୍ୟ

କରିଥାନ୍ତି, ତାହା ସେମାନଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଲୋକେ ଭୁଲିଯାଇ-ଥାନ୍ତି । ଏହାହିଁ ଜଗତର ନିୟମ । ତେଣୁ ଲୋକେ ସିଜରଙ୍କର ସୁକର୍ମଗୁଡ଼ିକ ଭୁଲିଯାଇ କେବଳ ତାଙ୍କର କୁକର୍ମ ଗୁଡ଼ିକ ମନେ ରଖିବା ଖୁବ୍ ସ୍ୱାଭାବିକ । ବ୍ରୁଟସ୍ ଜଣେ ମହାନ୍ ବ୍ୟକ୍ତି । ସେ ବର୍ତ୍ତମାନ ଆପଣମାନଙ୍କୁ କହିଲେ ଯେ ସିଜର୍ ଗର୍ବୀ, ଅଭିମାନୀ ଥିଲେ । ଏହା ସତ୍ୟ ହୋଇଥିଲେ ସିଜ୍ର ଘୋର ଅପରାଧୀ ଥିଲେ ଏବଂ ସେହି ଅପରାଧର ଉପଯୁକ୍ତ ଦଣ୍ଡ ଭୋଗ କରି ଅଛନ୍ତି । ବ୍ରୁଟସ୍‌ଙ୍କର ଅନୁମତି ନେଇ ମୁଁ ସ୍ୱର୍ଗତ ସିଜର୍‌ଙ୍କ ବିଷୟରେ ଆପଣମାନଙ୍କୁ କିଛି କହିବାକୁ ଆସିଛି । ସିଜର୍ ମୋର ଜଣେ ବିଶ୍ୱସ୍ତ ବନ୍ଧୁ ଥିଲେ; କିନ୍ତୁ ବ୍ରୁଟସ୍ କହନ୍ତି ଯେ ସିଜର୍ ଅଭିମାନୀ ଥିଲେ । ବ୍ରୁଟସ୍ ଜଣେ ସମ୍ମାନାସ୍ପଦ ବ୍ୟକ୍ତି । ତାଙ୍କ କଥାକୁ ଅବିଶ୍ୱାସ କରିବାର କାରଣ ନାହିଁ । ସିଜର୍ ଦରିଦ୍ରମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରୁଥିଲେ । ସେମାନଙ୍କ ଦୁଃଖରେ ସିଜର୍‌ଙ୍କର ହୃଦୟ ଦ୍ରବୀଭୂତ ହୋଇ ଯାଉଥିଲା । ସିଜର ଅଭିମାନୀ ହୋଇଥିଲେ, ଉଚ୍ଚ ଅଭିଳାଷ ପୋଷଣ କରିଥିଲେ, ତାଙ୍କର ହୃଦୟ ଏପରି କୋମଳ ହୋଇ ନ ଥାନ୍ତା; କିନ୍ତୁ ବ୍ରୁଟସ୍‌ଙ୍କ ଭଳି ଜଣେ ବିଶିଷ୍ଟ, ସମ୍ମାନାସ୍ପଦ ବ୍ୟକ୍ତି କହୁଛନ୍ତି ଯେ ସିଜର ଉଚ୍ଚାକାଂକ୍ଷୀ ଥିଲେ । ତାଙ୍କୁ ଅବିଶ୍ୱାସ କରିବାର କାରଣ ନାହିଁ । ଆପଣମାନେ ଦେଖିଥିବେ, କାଲି କ୍ରୀଡ଼ା କୌତୁକ ବେଳେ ମୁଁ ସିଜର୍‌ଙ୍କୁ ଥରି ଥରି କରି ତିନି ଥର ରାଜ-ମୁକୁଟ ଯାଚିଲି; କିନ୍ତୁ ସେ ତିନିଥର ଯାକ ତାହା ପ୍ରତ୍ୟାଖ୍ୟାନ କଲେ । ଏ କଣ ତାଙ୍କ ଉଚ୍ଚ ଅଭିଳାଷର ପରିଚାୟକ ? ତଥାପି ବ୍ରୁଟସ୍ କହନ୍ତି ଯେ ସିଜର ଉଚ୍ଚାଭିଳାଷୀ ଥିଲେ । ବ୍ରୁଟସ୍‌ଙ୍କ ଭଳି ସମ୍ମାନାସ୍ପଦ ବ୍ୟକ୍ତିଙ୍କର କଥାକୁ କିଏ ଅବିଶ୍ୱାସ କରିବ ?”

ଆଣ୍ଟୋନିଙ୍କର ବକ୍ତୃତା ଶୁଣି ଲୋକମାନେ କ୍ରମଶଃ ବ୍ରୁଟସଙ୍କର ବିରୋଧୀ ହୋଇଉଠିଲେ । ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ—ଆଣ୍ଟୋନି ଯାହା କହୁଛନ୍ତି ସେଥିରେ ଯଥେଷ୍ଟ ସତ୍ୟ ଅଛି । ସିଜରଙ୍କ ପ୍ରତି ଘୋର ଅନ୍ୟାୟ କରାଯାଇଅଛି । ଯେଉଁ ଲୋକ ରାଜ ମୁକୁଟକୁ ପ୍ରତ୍ୟାଖ୍ୟାନ କରିପାରେ ସେ କି କେବେ ଉଚ୍ଚାଭିଳାଷୀ ହୋଇପାରେ ?

ଆଣ୍ଟୋନି ଟିକିଏ ରହିଯାଇ ପୁଣି କହିଲେ, "ମୁଁ ଇଚ୍ଛାକଲେ ଆପଣମାନଙ୍କ ମନରେ କ୍ରୋଧ ଜାଗ୍ରତ କରିପାରେ; କିନ୍ତୁ ତାହା କରିବା ମୋର ଇଚ୍ଛା ନୁହେଁ । ସେପରି କଲେ ମୁଁ କେତେ ସମ୍ମାନାସ୍ପଦ ଲୋକଙ୍କ ପ୍ରତି ଅବିଚାର କରିବି । ଯେଉଁ ସମ୍ମାନାସ୍ପଦ ଲୋକମାନେ ସିଜରଙ୍କୁ ହତ୍ୟା କରିଅଛନ୍ତି । ସେମାନଙ୍କ ପ୍ରତି ଅବିଚାର କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।"

ଏହା ଶୁଣିଲାକ୍ଷଣି ଲୋକେ କହି ଉଠିଲେ, "କିଏ ସେମାନଙ୍କୁ ସମ୍ମାନାସ୍ପଦ ବୋଲି କହିବ ? ସେମାନେ ହେଉଛନ୍ତି ଘୋର ଆତତାୟୀ, ନରହନ୍ତା, ସଇତାନ ।"

ଆଣ୍ଟୋନି କହିବାକୁ ଲାଗିଲେ, "ଆପଣମାନଙ୍କ ଚକ୍ଷୁରେ ଯଦି ଅଶ୍ରୁ ଥାଏ, ତେବେ ସେ ଅଶ୍ରୁ ବର୍ତ୍ତମାନ ଢାଳିଦିଅନ୍ତୁ । ଏଇ ଦେଖନ୍ତୁ, ଦୁରାତ୍ମା କାସ୍କାର ଅସିରେ ସିଜରଙ୍କ ଶରୀରରେ ଏହି କ୍ଷତ ହୋଇଅଛି । ଆଉ ଏଇଠାରେ ସିଜରଙ୍କର ପରମ ବନ୍ଧୁ ବ୍ରୁଟସ୍‌ଙ୍କ ଅସି ଭେଦି ଥିଲା । ଏହି କ୍ଷତଟି ସିଜର୍‌ଙ୍କ ପକ୍ଷରେ ସବୁଠାରୁ ନିଦାରୁଣ । ଆପଣମାନେ ଜାଣନ୍ତି, ବ୍ରୁଟସ୍ ସିଜର୍‌ଙ୍କର କେଡ଼େ ପ୍ରିୟ ଥିଲେ । ଯେତେବେଳେ ସିଜର୍ ଦେଖିଲେ ଯେ ବ୍ରୁଟସ୍ ମଧ୍ୟ ତାଙ୍କୁ ଆଘାତ କରୁଛନ୍ତି, ସେତେବେଳେ ତାଙ୍କର ହୃଦୟ ଫାଟିଗଲା । ସେ ଅସହ ତ୍ୟାଗକେର ମୃତ୍ୟୁକୁ ବରଣ କରିନେଲେ ।"

ଲୋକଙ୍କ ମଧ୍ୟରେ କ୍ରମଶଃ ଉତ୍ତେଜନା ବୃଦ୍ଧି ପାଉଥିଲା । ସେମାନେ ଚିତ୍କାର କଲେ, "ସିଜର୍ କେଡ଼େ ମହାନ୍ ଥିଲେ ! କି ଭୀଷଣ ଦୃଶ୍ୟ ଦେଖିବାକୁ ହେଲା ! ସିଜର୍‌ଙ୍କ ମୃତ୍ୟୁର ପ୍ରତିଶୋଧ ନେବାକୁ ହେବ ।"

ସେମାନେ ଭୀଷଣ ଗୋଳମାଳ ମଧ୍ୟରେ ବଜାରରୁ ବାହାରି-ପଡ଼ି ସିଜର୍‌ଙ୍କ ହତ୍ୟାକାରୀମାନଙ୍କୁ ଖୋଜିବାକୁ ଲାଗିଲେ । ମାର୍କ ଆଣ୍ଟୋନି ନିଜର ଉଦ୍ଦେଶ୍ୟ ସଫଳ ହେବାର ଦେଖି ମନେ ମନେ ସନ୍ତୁଷ୍ଟ ହେଲେ ।

ଆଣ୍ଟୋନି ଘରକୁ ଯାଉ ଯାଉ ବାଟରେ ଜଣେ ଚାକର ଆସି ସମ୍ବାଦ ଦେଲା ଯେ ବ୍ରୁଟସ୍ ଓ ତାଙ୍କର ବନ୍ଧୁମାନେ ଜନସାଧାରଣଙ୍କର ମନୋଭାବ ବୁଝିପାରି ସହରରୁ ପଳାଇ ଯାଇଛନ୍ତି । ଆହୁରି ମଧ୍ୟ ସେ ସମ୍ବାଦ ଦେଲା ଯେ ମୃତ ସିଜର୍‌ଙ୍କର ଜନୈକ ବନ୍ଧୁ ଅକ୍ଟାଭିଅସ୍ ଗୋଟିଏ ସୈନ୍ୟଦଳ ସହିତ ରୋମ୍‌ରେ ଉପସ୍ଥିତ ହୋଇଅଛନ୍ତି । ଆଣ୍ଟୋନି ଯୁଦ୍ଧ ସକାଶେ ପରାମର୍ଶ କରିବା ପାଇଁ ଅକ୍ଟାଭିଅସ୍‌ଙ୍କ ପାଖକୁ ଗଲେ ।

ବ୍ରୁଟସ୍ ଓ କାସିଅସ୍ ଦେଖିଲେ ଯେ ଖାଲି ରୋମ୍ କାହିଁକି, ଇଟାଲିର କୌଣସି ସ୍ଥାନରେ ସେମାନଙ୍କର ଜୀବନ ନିରାପଦ ନୁହେ । ତେଣୁ ସେ ଦୁହେଁ ଗ୍ରୀସ୍‌କୁ ପଳାଇ ସେଠାରେ ନିଜର ଦଳ ପୁଷ୍ଟି କରିବାକୁ ଲାଗିଲେ । ଏଣେ ଆଣ୍ଟୋନି ଓ ଅକ୍ଟାଭିଅସ୍ ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ପ୍ରାୟ ବର୍ଷକ ପରେ ସାର୍ଡିସ ନାମକ ଏକ ସ୍ଥାନରେ ବ୍ରୁଟସ୍ ଓ କାସିଅସ୍ ତାଙ୍କର ସୈନ୍ୟଦଳ ଘେନି ଉପସ୍ଥିତ ହେଲେ । ସେଠାରୁ କିଛି ଦୂରରେ ଫିଲିପି ସହର ନିକଟରେ ଆଣ୍ଟୋନି ଓ ଅକ୍ଟାଭିଅସ୍‌ଙ୍କ ସୈନ୍ୟମାନେ ପ୍ରସ୍ତୁତ ହୋଇ ରହିଲେ ।

ଏହି ବର୍ଷକ ମଧ୍ୟରେ ବ୍ରୁଟସ୍ ବୁଝିପାରିଥିଲେ ଯେ ଯେଉଁମାନେ ସିଜର୍‌ଙ୍କୁ ହତ୍ୟାକରିବାରେ ତାଙ୍କୁ ସାହାଯ୍ୟ କରିଥିଲେ, ସେମାନଙ୍କର ଉଦ୍ଦେଶ୍ୟ ଭଲ ନ ଥିଲା । ବ୍ରୁଟସ ରୋମ୍‌ର ସ୍ୱାଧୀନତା ରକ୍ଷା କରିବାକୁ ନିଜର ପ୍ରିୟ ବନ୍ଧୁଙ୍କୁ ହତ୍ୟା କରିବାକୁ କୁଣ୍ଠିତ ହୋଇ ନ ଥିଲେ । କିନ୍ତୁ ତାଙ୍କ ଦଳର ଲୋକମାନଙ୍କର ଉଦ୍ଦେଶ୍ୟ ଭିନ୍ନ ଥିଲା । ସେମାନେ ନିଜର ପଦବୃଦ୍ଧି, ଅନ୍ୟାୟ ଉପାୟରେ ଅର୍ଥ ଅର୍ଜନ, ଉଚ୍ଚ ପଦରେ ନିଜର ଲୋକଙ୍କୁ ନିଯୁକ୍ତ କରିବା, ଏହିପରି ନୀଚ ଉଦ୍ଦେଶ୍ୟ ରଖି ତାଙ୍କୁ ସାହାଯ୍ୟ କରିଥିଲେ । ଏପରି କି ତାଙ୍କର ଶାଳକ କାସିଅସ୍‌ଙ୍କର ମଧ୍ୟ ସେହିପରି ହୀନ ଉଦ୍ଦେଶ୍ୟ ଥିଲା । ବ୍ରୁଟସ୍ ଏଥିରେ ମର୍ମାହତ ହୋଇପଡ଼ିଲେ । ଏହି ସମୟରେ ସମ୍ବାଦ ଆସିଲା ଯେ ବ୍ରୁଟସ୍‌ଙ୍କ ସ୍ତ୍ରୀ ପ୍ରାଣତ୍ୟାଗ କରିଅଛନ୍ତି । ତାଙ୍କର ଦୁଃଖର ସୀମା ରହିଲା ନାହିଁ ।

କାସିଅସ୍ ବୟସରେ ବ୍ରୁଟସଙ୍କଠାରୁ ବଡ଼ । ତେଣୁ ସେ ମନେ ମନେ ବ୍ରୁଟସ୍‌ଙ୍କ ନେତୃତ୍ୱକୁ ଭଲ ପାଉ ନ ଥିଲେ । କ୍ରମେ ଦୁହିଁଙ୍କ ମଧ୍ୟରେ ବିରୋଧ ଜାତହେଲା ।

ତଥାପି ଦୁହେଁ ମିଳି ଭବିଷ୍ୟତ ଯୁଦ୍ଧ ପାଇଁ କଳ୍ପନା କରିବାକୁ ବସିଲେ । କେଉଁଠାରେ କିପରି ଯୁଦ୍ଧ କରିବାକୁ ହେବ ସେ ବିଷୟରେ ମଧ୍ୟ ଦୁହିଁଙ୍କ ଭିତରେ ମତଭେଦ ଉପୁଯିତ ହେଲା । ବ୍ରୁଟସ୍ ପ୍ରସ୍ତାବ କଲେ ଯେ ସେମାନେ ସୈନ୍ୟଦଳ ସହିତ ଫିଲିପି ପର୍ଯ୍ୟନ୍ତ ଅଗ୍ରସର ହୋଇ ସେଠାରେ ଆଣ୍ଟୋନିଙ୍କ ଆକ୍ରମଣକୁ ଅପେକ୍ଷା କରିବେ । କାସିଅସ୍ କହିଲେ, "ନାଁ, ତା ନକରି ଆମେ ଏହିଠାରେ ଅପେକ୍ଷା କରି ରହିବା । ଆଣ୍ଟୋନିଙ୍କ ସୈନ୍ୟମାନେ ସାର୍ଦ୍ଦିସରୁ ଏ ପର୍ଯ୍ୟନ୍ତ ଆସି କ୍ଳାନ୍ତ ହୋଇ ପଡ଼ିବେ । ସେତେବେଳେ ସେମାନଙ୍କୁ ପରାସ୍ତ କରିବା ସହଜ ହେବ ।

ବ୍ରୁଟସ୍ ନିଜର ପ୍ରସ୍ତାବ ସମର୍ଥନ କରି କହିଲେ ଯେ ଫିଲିପି ଓ ସାର୍ଦ୍ଦିସ୍ ମଧ୍ୟରେ ଯେଉଁ ଲୋକମାନେ ବାସ କରନ୍ତି, ସେମାନେ ଆଣ୍ଟୋନିଙ୍କର ସମର୍ଥକ । ତେଣୁ ଆଣ୍ଟୋନି ଫିଲିପିକୁ ଆସିଲେ ବାଟରେ ସେମାନେ ଆଣ୍ଟୋନିଙ୍କ ଦଳରେ ଯୋଗ ଦେବେ । ଅତଏବ ଫିଲିପି ପର୍ଯ୍ୟନ୍ତ ଯାଇ ସେଠାରେ ଆକ୍ରମଣ କରିବା ସୁବିଧାଜନକ ହେବ । ସେ କହିଲେ "ଭାଗ୍ୟରେ ସବୁବେଳେ ସୁବିଧା ମିଳେ ନାହିଁ; ବେଳେ ବେଳେ ମିଳିଥାଏ । ସେ ବେଳର ସୁଯୋଗ ନେଲେ ସୌଭାଗ୍ୟ ଆପେ ଆପେ ଆସେ । ଚାଲ, ଆମେ ଫିଲିପିଠାରେ ଯୁଦ୍ଧ କରିବା ।"

କାସିଅସ୍ ଅନିଚ୍ଛାସତ୍ତ୍ୱେ ବ୍ରୁଟସ୍ଙ୍କ ପ୍ରସ୍ତାବରେ ସ୍ୱୀକୃତ ହେଲେ । ସେ ଦୁହେଁ ସୈନ୍ୟ ଘେନି ଫିଲିପିରେ ଉପସ୍ଥିତ ହେଲେ । ଏହା ଦେଖି ଆଣ୍ଟୋନି ଓ ଅକ୍ଟାଭିଅସ୍ ବରଂ ଆନନ୍ଦିତ ହେଲେ; କାରଣ ସେଠାରେ ଆତ୍ମରକ୍ଷା କରିବା ପାଇଁ ସେମାନଙ୍କର ବେଶି ସୁବିଧା ଥିଲା । ଦୁଇପକ୍ଷର ସୈନ୍ୟମଧ୍ୟରେ ଯୁଦ୍ଧ ଚାଲିଲା । ଉଭୟ ପକ୍ଷର ସୈନ୍ୟ ଏକ ପ୍ରକାର ପୋଷାକ ପିନ୍ଧିଥିବାରୁ କିଏ ମିତ୍ର, କିଏ ଶତ୍ରୁ ସହଜେ ଜଣା ପଡ଼ୁ ନଥିଲା । ତେଣୁ ଯୁଦ୍ଧ ଭୂମିରେ ଗୋଳମାଳ ହେଲା । ତାଛଡ଼ା ବ୍ରୁଟସ୍ଙ୍କ ଦଳରେ ନେତାମାନଙ୍କ ମଧ୍ୟରେ ମତଭେଦ ରହିଥିଲା । ସେମାନେ ପରସ୍ପରକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ ।

ସେନାପତିମାନଙ୍କ ସଙ୍ଗେ ଆଲୋଚନା ବେଳେ କାସିଅସ୍ କହିଲେ ଯେ ଫିଲିପିକୁ ଆସି ଯୁଦ୍ଧ କରିବା ତାଙ୍କର ଇଚ୍ଛା ନଥିଲା । ବାଧ୍ୟହୋଇ ସେ ବ୍ରୁଟସ୍ଙ୍କ କଥାରେ ରାଜି ହୋଇଥିଲେ । ତାଙ୍କର ସୈନ୍ୟମାନେ ସାର୍ଦ୍ଦିସଠାରୁ ଫିଲିପିକୁ ଆସିବାରେ କ୍ଲାନ୍ତ ହୋଇ

ପଡ଼ିଛନ୍ତି । ଆଣ୍ଟୋନିଙ୍କ ସୈନ୍ୟମାନେ ଯୁଦ୍ଧଭୂମିର ସୁବିଧାଜନକ ଜାଗା ମାଡ଼ିବସି ରହିଛନ୍ତି । ବ୍ରୁଟସ୍‌ଙ୍କ ନିକଟରେ ମଧ୍ୟ ସେ ଏହି ମତ ପ୍ରକାଶ କରି କହିଲେ, "ମୋର ସନ୍ଦେହ ହୁଏ ଯେ ଆମେ ଏ ଯୁଦ୍ଧରେ ଜିଣିପାରିବା ନାହିଁ । ତୁମର ପ୍ରସ୍ତାବ ଅନୁସାରେ କାର୍ଯ୍ୟ କରିବାରୁ ଏପରି ଘଟିଲା । ଆମେ ଯୁଦ୍ଧରେ ହାରିଗଲେ ଅବସ୍ଥା କଅଣ ହେବ ? ଯେତେବେଳେ ତୁମେ ଆଣ୍ଟୋନିର ବନ୍ଦୀଭାବରେ ରୋମର୍ ରାଜପଥରେ ନିଆଯିବ, ସେ ସମୟର କଥା ଭାବିଛ କି ?"

ଏହା ଶୁଣି ବ୍ରୁଟସ କ୍ରୋଧରେ ଅଧୀର ହୋଇ କହିଲେ, "ବ୍ରୁଟସ୍ ବନ୍ଦୀ ହେବା ପୂର୍ବରୁ କଦାପି ଜୀବନ ଧରି ରହିବ ନାହିଁ— ଏ ବିଷୟରେ ନିଶ୍ଚିନ୍ତ ଥାଅ ।"

ଦୁଇ ନେତାଙ୍କ ମଧ୍ୟରେ ଏହି ବିରୋଧ ଫଳରେ ସୈନ୍ୟମାନେ ଦୁଇ ଦଳରେ ବିଭକ୍ତ ହୋଇଗଲେ । ଅଧେ ବ୍ରୁଟସ୍‌ଙ୍କ ଅଧୀନରେ ଓ ଅନ୍ୟ ଅଧେ କାସିଅସ୍‌ଙ୍କ ଅଧୀନରେ ଯୁଦ୍ଧ କରିବାକୁ ବାହାରିଲେ । କେହି ଆଉ ବିଜୟ ଲାଭ କରିବାର ଆଶା ରଖି ପାରିଲେ ନାହିଁ । ବିଜୟଲକ୍ଷ୍ମୀ ଆଣ୍ଟୋନିଙ୍କ ପକ୍ଷରେ ଥିଲାପରି ଜଣାଗଲା ।

ପ୍ରାୟ ଦ୍ୱି ପ୍ରହର ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । ଆଣ୍ଟୋନିଙ୍କ ସୈନ୍ୟମାନେ ଜିଣିବାର ଆଶା ଦେଖା ଯାଉଥାଏ । ଏହି ସମୟରେ ଜଣେ ସୈନ୍ୟ ଆସି କାସିଅସ୍‌ଙ୍କୁ ସମ୍ବାଦ ଦେଲା ଯେ ଶତ୍ରୁ ତାଙ୍କ ତମ୍ବୁରେ ପଶିଲେଣି । ଏଥିରୁ କାସିଅସ୍ ବୁଝିଲେ ଯେ ତାଙ୍କର ସୈନ୍ୟମାନେ ହାରିଗଲେଣି । ତେଣୁ ସେ ଶତ୍ରୁ ହାତରେ ବନ୍ଦୀହେବା ପୂର୍ବରୁ ପ୍ରାଣ ତ୍ୟାଗ କରିବା ଶ୍ରେୟସ୍କର ମନେକରି ଆତ୍ମହତ୍ୟା କଲେ ।

କିଛି ସମୟ ପରେ ବ୍ରୁଟସ୍ ଆସି ଦେଖିଲେ ଯେ ତାଙ୍କର ଶ୍ୟାଳକ କାସିଅସ୍ ମୃତ୍ୟୁଶଯ୍ୟାରେ ଶାୟିତ । ସେ କହିଉଠିଲେ,

"ଜୁଲିଅସ୍ ସିଜର ! ତୁମେ ମରି ସୁଦ୍ଧା ଅମର । ଏବେ ସୁଦ୍ଧା ତୁମର ପ୍ରେତାତ୍ମା ଆମ ପଛେ ପଛେ ବୁଲୁଛି; ଆମର ଖଣ୍ଡାରେ ଆମକୁ ହତ୍ୟା କରାଉଛି ।"

ଯୁଦ୍ଧରେ ଜିତିବାର ଆଶା ନ ଥିଲେହେଁ ବ୍ରୁଟସ୍ ଅବଶିଷ୍ଟ ସୈନ୍ୟଙ୍କୁ ନେଇ ପୁଣି ଶତ୍ରୁ ଉପରେ ଆକ୍ରମଣ କଲେ, ମାତ୍ର ଅଳ୍ପ-କାଳ ମଧ୍ୟରେ ସେ ପରାସ୍ତ ହେଲେ । ସେ ଏବଂ ତାଙ୍କର କେତେଜଣ ବନ୍ଧୁ କୌଣସି ପ୍ରକାରେ ଯୁଦ୍ଧଭୂମିରୁ ପଳାୟନ କଲେ, ତାଙ୍କର ଅଧିକାଂଶ ସୈନ୍ୟ ଶତ୍ରୁ ହସ୍ତରେ ବନ୍ଦୀ ହେଲେ ।

ମାର୍କ ଆଣ୍ଟୋନି ନିଜର ସୈନ୍ୟମାନଙ୍କୁ ଆଦେଶ ଦେଲେ ଯେ ପରାଜିତ ବନ୍ଦୀ ସୈନ୍ୟମାନଙ୍କ ପ୍ରତି କୌଣସି ପ୍ରକାର ଦୁର୍ବ୍ୟବହାର କରାଯିବ ନାହିଁ; ବରଂ ସେମାନଙ୍କ ପ୍ରତି ଆଦର ଓ ଗୌରବ ପ୍ରଦର୍ଶନ କରାଯିବ । ଆହୁରି ମଧ୍ୟ କେତେଜଣ ଅନୁଚରଙ୍କୁ ଆଦେଶ ଦିଆଗଲା ଯେ ସେମାନେ ଅନୁସନ୍ଧାନ କରି ବ୍ରୁଟସ୍‌ଙ୍କୁ ସମ୍ମାନର ସହିତ ଅକ୍ଟାଭିଅସ୍‌ଙ୍କ ଶିବିରକୁ ନେଇଆସିବେ । ସେମାନେ ପରି-ଶେଷରେ ବ୍ରୁଟସ୍‌ଙ୍କୁ ଦେଖିଲେ, ମାତ୍ର ସେତେବେଳକୁ ଆଉ ତାଙ୍କ ପିଣ୍ଡରେ ପ୍ରାଣ ନଥିଲା । କାସିଅସ୍‌ଙ୍କ ପରି ସେ ମଧ୍ୟ ଶତ୍ରୁ ହସ୍ତରେ ଧରା ପଡ଼ିବା ପୂର୍ବରୁ ସ୍ୱହସ୍ତରେ ନିଜର ପ୍ରାଣନାଶ କରି ସାରିଥିଲେ । ରୋମ୍‌ର ଗୌରବ, ରୋମ୍‌ର ସ୍ୱାଧୀନତା, ରୋମବାସୀଙ୍କର ମଙ୍ଗଳ ଏହାହିଁ ତାଙ୍କ ଜୀବନର ସ୍ୱପ୍ନ ଥିଲା । କେ ସ୍ୱପ୍ନ ତ ଭଙ୍ଗ ଗଲା—ଆଉ ସେ ବଞ୍ଚିରହିବେ କାହିଁକି ? ଏହାହିଁ ତାଙ୍କର ଅନ୍ତିମ ଚିନ୍ତା ଥିଲା ।

ମାର୍କ ଆଣ୍ଟୋନି ବ୍ରୁଟସ୍‌ଙ୍କ ଶବ ନିକଟରେ ଜାନୁପାତ କରି କହିଲେ, "ତୁମେହିଁ ଥିଲ ରୋମ୍‌ର ଶ୍ରେଷ୍ଠ ପୁରୁଷ । ଅନ୍ୟମାନେ ଯାହା କରିଥିଲେ, ତାହା କେବଳ ହିଂସା ପ୍ରଣୋଦିତ ହୋଇ କରି-

ଥିଲେ । ସିଜର୍‌ଙ୍କ ପ୍ରତି ସେମାନଙ୍କର ଈର୍ଷା ଥିଲା । କିନ୍ତୁ ଏକମାତ୍ର ବ୍ରୁଟସ୍ ରୋମ୍‌ବାସୀଙ୍କ ମଙ୍ଗଳ ପାଇଁ କର୍ତ୍ତବ୍ୟର ଆହ୍ୱାନରେ ଆପଣାର ପରମ ବନ୍ଧୁର ବିରୋଧୀ ହୋଇଥିଲେ ।”

ସେ ଦଣ୍ଡାୟମାନ ହୋଇ ସୈନ୍ୟମାନଙ୍କୁ ଆଦେଶ ଦେଲେ, “ଯାଅ ବ୍ରୁଟସ୍‌ଙ୍କର ଶବକୁ ଶିବିରକୁ ନେଇଆସ । ତାଙ୍କୁ ସମ୍ମାନ ସହକାରେ କବର ଦେବାକୁ ହେବ; ତାଙ୍କର ଗୁଣରେ ଉପଯୁକ୍ତ ସମ୍ମାନ କରିବାକୁ ହେବ । ଜଗତକୁ ଜଣାଇ ଦେବାକୁ ହେବ ଯେ ବ୍ରୁଟସ୍ ଜଣେ ଯଥାର୍ଥ ବୀର ଥିଲେ ଓ ସେ ସମ୍ମାନର ପାତ୍ର ।”

---

# ମାକ୍‌ବେଥ୍

ବହୁକାଳ ପୂର୍ବେ ସ୍କଟ୍‌ଲଣ୍ଡ ଦେଶରେ ଜଣେ ରାଜା ଥିଲେ । ତାଙ୍କର ନାମ ଡଙ୍କାନ୍ । ରାଜା ଡଙ୍କାନ୍ ବୀର ଓ ଉଦାରହୃଦୟ ଥିଲେ । ତାଙ୍କ ଅଧୀନରେ ଅନେକ ବଡ଼ ବଡ଼ ଜମିଦାର ଥିଲେ । ଏହି ଜମିଦାରମାନଙ୍କ ମଧ୍ୟରୁ କେହି କେହି କ୍ଷମତାଶାଳୀ ହୋଇ ରାଜାଙ୍କର ବିଦ୍ରୋହୀ ହେଉଥିଲେ ।

ଗ୍ଲାମିସ୍ ନାମକ ଏକ ଜମିଦାରି ଥିଲା । ଏହାର ଅଧିକାରୀ ଥିଲେ ମାକ୍‌ବେଥ । ମାକ୍‌ବେଥ୍ ଥିଲେ ରାଜବଂଶୀୟ ଏବଂ ଡଙ୍କାନ୍‌ଙ୍କର ଭାଇ । ସେ କେବଳ ଯେ ଜଣେ ବଡ଼ ଜମିଦାର ଥିଲେ ତାହା ନୁହେଁ, ସେ ରାଜାଙ୍କର ଜଣେକ ସେନାପତିରୂପେ ମଧ୍ୟ ସୁନାମ ଅର୍ଜନ କରିଥିଲେ ।

ଏକଦା କଡ଼ାର୍ ନାମକ ଏକ ଜମିଦାରିର ଅଧିପତି ରାଜା ଡଙ୍କାନ୍‌ଙ୍କର ବିରୋଧୀ ହୋଇ ଉଠିଲେ । ସେ ନରଓ୍ୱେର ରଜାଙ୍କ ସହାୟତାରେ ବିଦ୍ରୋହାନଳ ପ୍ରଜ୍ୱଳିତ କରିବାରୁ ଡଙ୍କାନ୍ ସେମାନଙ୍କୁ ଦମନ କରିବାପାଇଁ ମାକ୍‌ବେଥ୍‌ଙ୍କୁ ପ୍ରେରଣ କଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ବାଙ୍କୋ ନାମକ ଅନ୍ୟ ଜଣେ ସହକାରୀ ମଧ୍ୟ ପ୍ରେରିତ ହେଲେ । ମାକ୍‌ବେଥ୍ ଓ ବାଙ୍କୋ ସୈନ୍ୟବଳ ସହ ବିଦ୍ରୋହୀମାନଙ୍କ ସଙ୍ଗେ ଯୁଦ୍ଧକଲେ । ଏହି ଯୁଦ୍ଧରେ କଡ଼ାର୍‌ର ଜମିଦାର ବନ୍ଦୀହେଲେ ଏବଂ ନରଓ୍ୱେର ରାଜା ପରାସ୍ତ ହୋଇ ଡଙ୍କାନ୍‌ଙ୍କର ବଶ୍ୟତା ସ୍ୱୀକାର କଲେ । ଏହିପରି ଯୁଦ୍ଧରେ ବିଜୟ ଲାଭକରି ମାକ୍‌ବେଥ୍ ଓ ବାଙ୍କୋ ରାଜପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲେ ।

ପଥ ମଧ୍ୟରେ ସେମାନେ ଗୋଟିଏ ବିଶାଳ ପ୍ରାନ୍ତର ଅତିକ୍ରମ କରୁଥିବା ବେଳେ ଏକ ବିଚିତ୍ର ଘଟଣା ଘଟିଲା । ଏହି ପ୍ରାନ୍ତରଟି ଜନଶୂନ୍ୟ । ଦୈବାତ୍ ସେଦିନ ଆକାଶ ମେଘାଚ୍ଛନ୍ନ ଥିଲା । ଝଟିକା ପ୍ରବାହିତ ହେଉଥିଲା । ବିଜୁଳିର ଆଲୋକରେ ସେମାନେ ସମ୍ମୁଖରେ ତିନୋଟି ଅଦ୍ଭୁତ ମୂର୍ତ୍ତି ଦେଖିପାରିଲେ । ସେମାନେ ବୃଦ୍ଧା ରମଣୀ-ପରି ବୋଧ ହେଉଥିଲେହେଁ, ସେମାନଙ୍କର ଆକୃତି ଓ ବେଶଭୂଷା, ମନୁଷ୍ୟର ଆକୃତି ଓ ବେଶଭୂଷାଠାରୁ ସମ୍ପୂର୍ଣ୍ଣ ପୃଥକ ଥିଲା । ସେମାନେ ନୀରବ ଭାବରେ ଛିଡ଼ା ହୋଇଥିଲେ । ବାଙ୍କୋ ଏହି ବିଚିତ୍ର ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହୋଇଗଲେ । କିନ୍ତୁ ସାହସୀ ମାକ୍‌ବେଥ ସେମାନଙ୍କୁ ଲକ୍ଷ୍ୟକରି କହିଲେ, "ତୁମ୍ଭେମାନେ କିଏ ? ଯଦି ତୁମର କଥା କହିବାର ଶକ୍ତି ଅଛି, ତେବେ ଆମମାନଙ୍କୁ ଉତ୍ତର ଦିଅ ।"

ବାଙ୍କୋ ସନ୍ଦେହ କରିଥିଲେ ଯେ ଏମାନେ କଦାପି ସାଧାରଣ ମନୁଷ୍ୟ ନୁହନ୍ତି । ଏମାନେ ନିଶ୍ଚୟ ପିଶାଚୀ । ବାଙ୍କୋ ଜାଣିଥିଲେ ଯେ ପିଶାଚୀମାନେ ଆଗତ ଭବିଷ୍ୟ ଜାଣନ୍ତି । ସେମାନେ ଯେ କାହିଁକି ଏପରି ଅସମୟରେ ସେଠାରେ ଦେଖାଦେଲେ, ତାହା ତାଙ୍କୁ ଅବୋଧ ଜଣାଗଲା ।

ଜଣେ ପିଶାଚୀ ମାକ୍‌ବେଥ୍‌ଙ୍କର କଥା ଶୁଣି ତାଙ୍କୁ ଗ୍ଲାମିସ୍‌ର ଜମିଦାର ବୋଲି ସମ୍ବୋଧନକଲା । ଏଥିରେ ବିସ୍ମୟର କିଛି କାରଣ ନ ଥିଲା । ମାକବେଥ୍ ବାସ୍ତବରେ ଗ୍ଲାମିସର ଜମିଦାର ଥିଲେ । କିନ୍ତୁ ଦ୍ୱିତୀୟ ପିଶାଚୀ ତାଙ୍କୁ କଡ଼ାର୍‌ର ଜମିଦାର ବୋଲି ସମ୍ବୋଧନ କରିଥିବାରୁ ସେ ଟିକିଏ ବିସ୍ମିତ ହେଲେ । ମାତ୍ର ତୃତୀୟ ପିଶାଚୀଟି ଭବିଷ୍ୟଦ୍‌ବାଣୀ କଲା ଯେ ମାକ୍‌ବେଥ୍ ହେଉଛନ୍ତି ସ୍କଟ୍‌ଲଣ୍ଡର ଭାବୀ ରାଜା ।

ମାକ୍‌ବେଥ୍‌ ଓ ବାଙ୍କୋ ଏହା ଶୁଣି ବିସ୍ମିତ ହୋଇଗଲେ । ଏହି ସମୟରେ ପିଶାଚୀମାନେ ବଙ୍କୋଙ୍କୁ ଲକ୍ଷ୍ୟକରି କହିଲେ, "ତୁମେ ମାକ୍‌ବେଥ୍‌ଙ୍କ ପରି ଭାଗ୍ୟବାନ୍ ନୁହଁ, କିନ୍ତୁ ତୁମେ ତାଙ୍କଠାରୁ ଅଧିକ ଭାଗ୍ୟବାନ୍ । ତୁମେ ଜୀବନରେ ରାଜସିଂହାସନରେ ବସିପାରିବ ନାହିଁ ସତ, ମାତ୍ର ତୁମର ପୁତ୍ରମାନେ ରାଜପଦର ଅଧିକାରୀ ହେବେ ।"

ହଠାତ୍ ଗୋଟାଏ ବିଜୁଳି ଖେଳିଗଲା । ଘଡ଼ଘଡ଼ିର ଶବ୍ଦ ଶୁଣାଗଲା । ମୁହୂର୍ତ୍ତିକ ମଧ୍ୟରେ ସେହି ମୂର୍ତ୍ତି ତିନୋଟି କେଉଁଆଡ଼େ ଉଭେଇଗଲେ ।

ମାକ୍‌ବେଥ ଓ ବାଙ୍କୋଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେମାନେ ଯାହା ଦେଖିଲେ ଓ ଶୁଣିଲେ ତାହା ବିଶ୍ୱାସ କରିପାରିଲେ ନାହିଁ । ସେମାନେ ଭାବିଲେ ଯେ ଏସବୁ ମାୟା ଅଥବା ସେମାନଙ୍କର ମସ୍ତିଷ୍କ ବିକୃତ ଘଟିଅଛି ।

ବାଙ୍କୋ ପଚାରିଲେ, "ତୁମେ କଅଣ ପ୍ରକୃତରେ ସେ ତିନିଜଣ ବୁଢ଼ୀଙ୍କୁ ଦେଖିଛ ?"

ମାକ୍‌ବେଥ୍‌ କହିଲେ, "ନିଶ୍ଚୟ, ସେମାନେ କହିଲେ ଯେ ତୁମର ପୁତ୍ରମାନେ ରାଜସିଂହାସନରେ ବସିବେ ।"

ବାଙ୍କୋ କହିଲେ "ଆହୁରି ମଧ୍ୟ ସେମାନେ କହିଛନ୍ତି ଯେ ତୁମେ ସ୍କଟଲଣ୍ଡର ରାଜା ହେବ ।"

ମାକ୍‌ବେଥ୍‌ କହିଲେ, "ଖାଲି ସେତିକି ନୁହେଁ । ସେମାନେ କହିଛନ୍ତି ଯେ ମୁଁ କଡ଼ାରର ଜମିଦାରି ମଧ୍ୟ ପାଇବି । ମାତ୍ର ଏ କଥାରେ ମୋର ଆଦୌ ବିଶ୍ୱାସ ହେଉନାହିଁ । କଡ଼ାରର ଜମିଦାର ବଞ୍ଚିଛନ୍ତି—ମୁଁ କିପରି ସେ ଜମିଦାରି ପାଇବି ? ପୁଣି ଡଙ୍କାନ୍ ହେଉଛନ୍ତି ସ୍କଟଲଣ୍ଡର ରାଜା । ତାଙ୍କର ଦୁଇ ପୁଅ ଅଛନ୍ତି ।

ରାଜାଙ୍କ ଅନ୍ତେ ତାଙ୍କ ପୁଅମାନେ ରାଜା ହେବା କଥା । ଏ ପିଶାଚୀ-ମାନେ ଯାହା କହିଲେ ସବୁ ମିଥ୍ୟା, ସବୁ ଅସମ୍ଭବ ।”

ସେ ଦୁହେଁ ଏହିପରି କଥାବାର୍ତ୍ତା ହେଉଛନ୍ତି, ଏହି ସମୟରେ ଦୁଇଜଣ ଅଶ୍ୱାରୋହୀ ସେମାନଙ୍କ ନିକଟରେ ଉପସ୍ଥିତ ହେଲେ । ସେମାନେ ରାଜାଙ୍କଠାରୁ ଏକ ଆଦେଶପତ୍ର ଆଣିଥିଲେ ଯେ କଡ଼ାର୍‌ର ବିଦ୍ରୋହୀ ଜମିଦାରକୁ ବନ୍ଦୀକରି ମାକବେଥ୍ ଅସୀମ ସାହସ ପ୍ରଦର୍ଶନ କରିଥିବାରୁ ତାଙ୍କୁ କଡ଼ାର୍‌ର ଜମିଦାରି ପ୍ରଦାନ କରାଗଲା । ବିଦ୍ରୋହୀ ଜମିଦାରଙ୍କୁ ପ୍ରାଣଦଣ୍ଡ ଆଦେଶ ଦିଆଯାଇଛି ।

ମାକ୍‌ବେଥ ଦେଖିଲେ ଯେ ପିଶାଚୀମାନଙ୍କର ପ୍ରଥମ ଉକ୍ତିଟି ସତ୍ୟରେ ପରିଣତ ହୋଇଅଛି । ସେ ବାଙ୍କୋଙ୍କୁ କହିଲେ, “ପିଶାଚୀମାନେ ଯାହା କହିଥିଲେ ସେଥିରୁ ପ୍ରଥମ କଥାଟି ଘଟିଗଲା । ସେମାନେ କହିଥିଲେ ଯେ ମୁଁ କଡ଼ାର୍‌ର ଜମିଦାର ହେବି । ଏବେ ତାହା ହେଲା । ତେବେ ତୁମର ପୁଅମାନେ ଯେ ସ୍କଟ୍‌ଲଣ୍ଡର ରାଜା ହେବେ ଏ ଆଶା ତୁମେ କରିବ ନାହିଁ କାହିଁକି ?”

ବାଙ୍କୋ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ । ସେ କହିଲେ, “ଦେଖ, ଏ ପିଶାଚୀମାନେ ବଡ଼ ଭୀଷଣ । ଏମାନେ ମନୁଷ୍ୟକୁ ବିପଦରେ ପକାଇ ଦେଇପାରନ୍ତି । ସେମାନଙ୍କ ଭବିଷ୍ୟଦ୍‌ବାଣୀକୁ ମୁଁ ବିଶ୍ୱାସ କରି ପାରୁନାହିଁ । ତୁମର ଏମାନଙ୍କ କଥାରେ ବିଶ୍ୱାସ ଥାଇପାରେ । ତେବେ ତୁମେ କୌଣସିମତେ ରାଜପଦ ପାଇବାକୁ ଚେଷ୍ଟା କରିପାର । ମାତ୍ର ମୋର କାହିଁକି ଭୟ ହେଉଛି ।”

ମାକ୍‌ବେଥ ରାଜଧାନୀରେ ଉପସ୍ଥିତ ହୁଅନ୍ତେ, ରାଜା ଡଙ୍କାନ୍ ତାଙ୍କୁ ଯଥେଷ୍ଟ ଆଦର ପ୍ରଦର୍ଶନ କଲେ । ମାକ୍‌ବେଥ୍‌ଙ୍କ ଗଡ଼ରେ କିଛିଦିନ ଅତିବାହିତ କରି ତାଙ୍କୁ ସମ୍ମାନ ଦେଖାଇବା ଲାଗି ରାଜା ଇଚ୍ଛା ପ୍ରକାଶ କଲେ । ରାଜାଙ୍କର ଉପଯୁକ୍ତ ଅଭ୍ୟର୍ଥନା ନିମନ୍ତେ

ପ୍ରସ୍ତୁତ ହେବା ଉଦ୍ଦେଶ୍ୟରେ ମାକ୍‌ବେଥ୍‌ ସଙ୍ଗେ ସଙ୍ଗେ ନିଜର ଗଡ଼କୁ ଚାଲିଗଲେ । ଏଥିପୂର୍ବରୁ ସେ ନିଜର ପତ୍ନୀଙ୍କ ନିକଟକୁ ଖଣ୍ଡିଏ ପତ୍ର ପଠାଇଥିଲେ । ସେଥିରେ ସେ ପିଶାଚୀମାନଙ୍କର ଭବିଷ୍ୟଦ୍‌ବାଣୀ ବିଷୟ ଉଲ୍ଲେଖ କରିବା ସଙ୍ଗ ତାହା କପରି ଆଂଶିକ ଭାବରେ ସଫଳ ହୋଇଥିଲା ତାହା ବର୍ଣ୍ଣନା କରିଥିଲେ ।

ମାକବେଥ୍‌ଙ୍କ ପତ୍ନୀଙ୍କର ଉଚ୍ଚ ଅଭିଳାଷ ଥିଲା । କପରି ତାଙ୍କର ଧନ, କ୍ଷମତା ଓ ପଦମର୍ଯ୍ୟାଦା ବୃଦ୍ଧି ପାଇବ ସେଥିପାଇଁ ସେ ଚେଷ୍ଟା କରୁଥିଲେ । ସାଧାରଣତଃ ରମଣୀମାନଙ୍କର ହୃଦୟ କୋମଳ; ମାତ୍ର ଶ୍ରୀମତୀ ମାକ୍‌ବେଥ୍‌ଙ୍କ ହୃଦୟ କଠୋର ଥିଲା । ଦୁଃସାହସ ଓ ମନର ଦୃଢ଼ତା ବିଷୟରେ ସେ ନିଜର ସ୍ୱାମୀଙ୍କୁ ବଳି ଯାଇଥିଲେ । ପିଶାଚୀଙ୍କର ଉକ୍ତି ଜାଣିଲା ବେଳୁ ସେ କେବଳ ଚିନ୍ତା କରୁଥିଲେ ଯେ କପରି ତାଙ୍କ ସ୍ୱାମୀ ରଜା ହେବେ ଓ ସେ ରାଣୀ ବୋଲାଇବେ । ସେ ମନେ ମନେ ସ୍ଥିର କରିନେଲେ ଯେ ଏହି ଉକ୍ତିକୁ ଶୀଘ୍ର ସଫଳ କରିବାର ଏକମାତ୍ର ଉପାୟ ହେଉଛି, ଡଙ୍କାନ୍‌ଙ୍କର ମୃତ୍ୟୁ । ଡଙ୍କାନ୍‌ ସ୍ୱତଃ ତାଙ୍କ ପ୍ରାସାଦକୁ ଆସୁଛନ୍ତି; ଏହା ବିଧାତାଙ୍କର ଏକ ଇଙ୍ଗିତ ବୋଲି ତାଙ୍କୁ ବୋଧ ହେଲା । ତେଣୁ ସେ ଡଙ୍କାନ୍‌ଙ୍କୁ ନିଜ ଦୁର୍ଗ ମଧ୍ୟରେ ହତ୍ୟା କରିବାକୁ ସ୍ଥିର କଲେ ।

ମାକ୍‌ବେଥ ଗଡ଼ରେ ପହଞ୍ଚିଲା ମାତ୍ରେ ତାଙ୍କ ସ୍ତ୍ରୀ ଡଙ୍କାନ୍‌ଙ୍କୁ ହତ୍ୟା କରିବା ପ୍ରସ୍ତାବ ତାଙ୍କୁ କହିଲେ । ସେ କହିଲେ, "ଏହି କାର୍ଯ୍ୟ ଅତି ସାବଧାନରେ ଓ କୌଶଳରେ କରିବାକୁ ହେବ ଯେପରି କି କେହି ସେମାନଙ୍କୁ ଲବମାତ୍ର ସନ୍ଦେହ ନକରନ୍ତି ।"

ମାକ୍‌ବେଥ୍‌ଙ୍କ ମନରେ ନାନା ସନ୍ଦେହ ଉପସ୍ଥିତ ହେଲା । ଏଣେ ରାଜା ହେବାର ଇଚ୍ଛା, ତେଣେ ଭୟ କପରି ସେ ରାଜାଙ୍କୁ ହତ୍ୟା କରିବେ ? ଜଣେ ପ୍ରଜା ପକ୍ଷରେ ରାଜାଙ୍କୁ ବଧ କରିବା

ଘୋର ପାପ । ପୁଣି ଡଙ୍କାନ୍ ତାଙ୍କର କୁଟୁମ୍ବୀ ଭାଇ । ଏବ ହତ୍ୟା କରିବାର ଚେଷ୍ଟା ସଫଳ ହୁଏ; ତେବେ ତାଙ୍କର ପରିଣାମ କଅଣ ହେବ ? ଜଣେ ବଶିଷ୍ଟ ଅତିଥିଙ୍କୁ ନିଜ ଗୃହରେ ହତ୍ୟା କରିବା କି ଜଘନ୍ୟ ପାପ ? ଏହିସବୁ ଚିନ୍ତା ତାଙ୍କୁ ଅସ୍ଥିର କରିପକାଇଲା ।

ଶ୍ରୀମତୀ ମାକବେଥ୍ ଦେଖିଲେ ଯେ ସ୍ୱାମୀଙ୍କଦ୍ୱାରା ଏହି କାର୍ଯ୍ୟ ହୋଇପାରିବା ସମ୍ଭବପର ନୁହେଁ । ତେଣୁ ସେ ସ୍ୱାମୀଙ୍କୁ କହିଲେ, "ଏପରି ଚିନ୍ତାକଲେ ତୁମେ କେବେହେଲେ କିଛି କରିପାରିବ ନାହିଁ । ଆଜ ସନ୍ଧ୍ୟାରେ ରାଜା ଆମ ଗଡ଼ରେ ପହଞ୍ଚିଲେ ତାଙ୍କୁ ଉପଯୁକ୍ତ ଆଦର ଅଭ୍ୟର୍ଥନା କର । ତା'ପରେ ଯାହା କରିବାର କଥା, ମୁଁ କରିବି । ସେ ବାବଦରେ ତୁମର ମୁଣ୍ଡ ଖେଳାଇବା ଦରକାର ନାହିଁ ।"

ସନ୍ଧ୍ୟାବେଳକୁ ରାଜା ଅଳ୍ପ କେତେଜଣ ଅନୁଚରଙ୍କ ସହିତ ଗଡ଼ରେ ଉପସ୍ଥିତ ହେଲେ । ରାଜାଙ୍କର ଉପଯୁକ୍ତ ଅଭ୍ୟର୍ଥନା ହେଲା । ଭୋଜନ କରି ରାଜା ଶୟନ କରିବାକୁ ଗଲେ । ମାକ୍‌ବେଥ୍ ନିଜ ସ୍ତ୍ରୀଙ୍କୁ କହିଲେ, "ତୁମେ ଯେଉଁ ବିଚାର କରିଥିଲ, ସେଥିରେ ଆଉ ଅଗ୍ରସର ହୁଅନାହିଁ । ରାଜା ମୋପ୍ରତି ଯଥେଷ୍ଟ ଅନୁଗ୍ରହ ଦେଖାଇ ଅଛନ୍ତି । ମୋର ଆଉ ଉଚ୍ଚପଦ ଆବଶ୍ୟକ ନାହିଁ ।"

କିନ୍ତୁ ଶ୍ରୀମତୀ ମାକ୍‌ବେଥ୍ ଏଥିମଧ୍ୟରେ ତାଙ୍କର ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କରିବେ ବୋଲି ସ୍ଥିର କରିସାରିଥିଲେ । ସେ ଟିକିଏ ବିରକ୍ତ ହୋଇ କହିଲେ, "ମୁଁ ଜାଣି ନଥିଲି ଯେ ତୁମେ ଏତେ ଭୀରୁ । ରାଜସିଂହାସନ ହାତ ମୁଠାରେ ପହଞ୍ଚିଛି । ତୁମେ ଭୟକରି ତାକୁ ଛାଡ଼ି ଦେବାକୁ ବସିଛ । ଏହାଠାରୁ ବଳି ଲଜ୍ଜାର କଥା କଅଣ ଅଛି ? ଟିକିଏ ସାହସ ଧର; ମନକୁ ଦୃଢ଼ ରଖ । ଆମର ଉଦ୍ଦେଶ୍ୟ ନିଶ୍ଚୟ ସଫଳ ହେବ । ମୁଁ ରାଜାଙ୍କର ଦେହରକ୍ଷୀ

ଦୁଇଜଣଙ୍କୁ ଯଥେଷ୍ଟ ମଦ ପିଇବାକୁ ଦେଇଛି । ତେଣୁ ସେମାନେ ଅବଶ ହୋଇ ପଡ଼ିରହିବେ । ଆମେ ଡଙ୍କାନ୍‌ଙ୍କୁ ହତ୍ୟାକରି ସେହି ଦେହରକ୍ଷୀଙ୍କ ଉପରେ ସବୁ ଦୋଷ ଅନାୟାସରେ ଲଦିଦେଇ ପାରିବା ।"

ଅଧରାତି । ସମସ୍ତେ ଗଭୀର ନିଦ୍ରାରେ ଶୋଇପଡ଼ିଛନ୍ତି । ଶ୍ରୀମତୀ ମାକ୍‌ବେଥ୍‌ ଗୋଟିଏ ଛୁରୀ ଧରି ଧୀରେ ଡଙ୍କାନ୍‌ଙ୍କ ଶୟନ ଗୃହରେ ପ୍ରବେଶ କଲେ । ଡଙ୍କାନ୍‌ ନିଦ୍ରିତ ଥିଲେ, ତାଙ୍କ ମୁଖ ମଣ୍ଡଳ ଶାନ୍ତ ଦେଖାଯାଉଥିଲା । ଶ୍ରୀମତୀ ମାକ୍‌ବେଥ୍‌ ଡଙ୍କାନ୍‌ଙ୍କୁ ସ୍ୱହସ୍ତରେ ବଧ କରିବାକୁ ମନ ଦୃଢ଼କରି ଯାଇଥିଲେ; ମାତ୍ର ତାଙ୍କର ପ୍ରସନ୍ନ ମୁଖମଣ୍ଡଳକୁ ଦେଖିବାକ୍ଷଣି ନିଜର ପିତାଙ୍କ କଥା ମନେ ପଡ଼ିଗଲା । ରାଜାଙ୍କ ଗଳାରେ ଛୁରିକା ଆଘାତ କରିବାକୁ ତାଙ୍କର ହାତ ଚଳିଲା ନାହିଁ । ସେ ପ୍ରକୋଷ୍ଠମଧ୍ୟରୁ ବାହାରି ଆସି ସ୍ୱାମୀଙ୍କୁ କହିଲେ, ଏହି ଛୁରୀନେଇ ଯାଅ । କାର୍ଯ୍ୟ ଶେଷକରି ଆସ । ଭୟର କିଛି କାରଣ ନାହିଁ ।"

ମାକ୍‌ବେଥ୍‌ ଅନିଚ୍ଛାସତ୍ତ୍ୱେ ଛୁରୀ ନେଇ ଡଙ୍କାନ୍‌ଙ୍କ ଶୟନ କକ୍ଷକୁ ଗଲେ । କିଛି ସମୟ ପରେ ସେ ସ୍ତ୍ରୀଙ୍କ ପାଖକୁ ଫେରିଆସି କହିଲେ, "ମୁଁ କାର୍ଯ୍ୟ ଶେଷକରି ଆସିଛି । ମାତ୍ର ତୁମେ ଶୁଣିଥିବ, କିଏ ଜଣେ ଚିତ୍କାର କରି କହିଲା, 'ହତ୍ୟା, ହତ୍ୟା; ମାକ୍‌ବେଥ୍‌ ହତ୍ୟା କରିଛି' ।"

ଏପରି କହିଲାବେଳେ ମାକ୍‌ବେଥ୍‌ ଥରିଯାଉଥାନ୍ତି, ତାଙ୍କ ତୁଣ୍ଡରୁ ସ୍ପଷ୍ଟ କଥା ବାହାରୁ ନଥାଏ । ଶ୍ରୀମତୀ ମାକ୍‌ବେଥ୍‌ ତାଙ୍କୁ ଶାନ୍ତକରି କହିଲେ, "ଏସବୁ କିଛି ନୁହେଁ । କଅଣ ଗୋଟାଏ ସ୍ୱପ୍ନ ଦେଖିଥିବ । ସେ ସବୁ ଭୁଲିଯାଅ । ତୁମ ହାତ ଗୋଡ଼ରେ ରକ୍ତ ଲାଗିଛି । ଆଗେ ତାକୁ ଧୋଇପକାଅ ।"

ଏହି ସମୟରେ ଶ୍ରୀମତୀ ମାକବେଥ୍ ଲକ୍ଷ୍ୟ କରିପାରିଲେ ଯେ ତାଙ୍କ ସ୍ୱାମୀ ରକ୍ତାକ୍ତ ଖଣ୍ଡାଟିକୁ ଧରି ଆସିଛନ୍ତି । ସେ ଟିକିଏ ବିରକ୍ତ ସ୍ୱରରେ କହିଲେ, "ତୁମର କଅଣ ଟିକିଏ ହେଲେ ବୁଦ୍ଧି ନାହିଁ ? ଖଣ୍ଡାଟା ନେଇଆସିଲ କାହିଁକି ? ଯାଅ, ସେଇଟାକୁ ସେ ରକ୍ଷକ ଦୁଇଜଣଙ୍କ ପାଖରେ ରଖିଦେଇ ଆସିବ । ତାହାହେଲେ ସହଜେ ପ୍ରମାଣିତ ହୋଇଯିବ ଯେ ସେମାନେ ରାଜାଙ୍କୁ ହତ୍ୟା କରି-ଅଛନ୍ତି ।"

ମାକ୍‌ବେଥ୍ କହିଲେ, "ମୋତେ ଆଉ ସେ କଥା କହନାହିଁ । ମୁଁ କେବେହେଁ ସେ ଘରକୁ ଆଉ ଯିବିନାହିଁ; ଯାହା କରିସାରିଛି, ତାହା ଭାବିଲା ବେଳକୁ ମୋର ଭୟ ଆସୁଛି, ପୁଣି କର୍ମ ଉଠୁଛି ମୁଁ କେବେହେଲେ ସେ ଦୃଶ୍ୟ ଦେଖି ସହିପାରିବି ନାହିଁ ।"

ଶ୍ରୀମତୀ ମାକ୍‌ବେଥ୍ ଦେଖିଲେ ଯେ ସ୍ୱାମୀଙ୍କୁ ଆଉ ଯିବାକୁ କହିବାରେ କିଛି ଲାଭ ନାହିଁ । ତହୁଁ ସେ କହିଲେ, "ତୁମ ମନରେ ଦୃଢ଼ତା ନାହିଁ । ଏତେ ଭୟ କଲେ ଚଳିବ କିପରି ? ହଉ, ମୋତେ ସେ ଖଣ୍ଡା ଦିଅ ।"

ମାକ୍‌ବେଥ୍‌ଙ୍କ ସ୍ତ୍ରୀ ଖଣ୍ଡାଟି ଧରି ଡଙ୍କାନ୍‌ଙ୍କ ଶୋଇବା ଘରକୁ ଗଲେ; ଶୋଇଥିବା ରକ୍ଷକ ଦୁହିଁଙ୍କ ପାଖରେ ଖଣ୍ଡାଟି ରଖିଦେଇ ଫେରିଆସିଲେ ।

ସ୍ୱାମୀଙ୍କ ପାଖରେ ଉପସ୍ଥିତ ହୋଇ ସେ ନିଜର ହାତ ଦେଖାଇ କହିଲେ, "ମୋର ହାତକୁ ଦେଖିଲ । ତୁମ ହାତରେ ଯେପରି ରକ୍ତ ଲାଗିଛି, ମୋ ହାତରେ ସେହିପରି ଲାଗିଛି । ମୋତେ ତ ଭୟ ଲାଗୁନାହିଁ, ତୁମର ଭୟ ହେଉଛି କାହିଁକି ?"

ସ୍ୱାମୀ ସ୍ତ୍ରୀ ଦୁହେଁ ଦେହରୁ ରକ୍ତ ଧୋଇ ନିଜ ଶୋଇବା ଘରକୁ ଚାଲିଗଲେ ।

ସକାଳ ହେଲା । ଅଳ୍ପ ସମୟ ଭିତରେ ବ୍ୟକ୍ତ ହୋଇଗଲା ଯେ ଗତ ରାତିରେ ରାଜାଙ୍କୁ କିଏ ହତ୍ୟା କରିଛନ୍ତି । ଗଡ଼ର ଲୋକେ ଚକିତ ହୋଇଗଲେ । ମାକ୍‌ବେଥ୍‌ଙ୍କୁ କେତେଜଣ ଲୋକ ଏହି ସମ୍ବାଦ ଦେଲାକ୍ଷଣି ସେ ସଙ୍ଗେ ସଙ୍ଗେ ଡଙ୍କାନ୍‌ଙ୍କ ଶୋଇବା ଘରେ ପ୍ରବେଶ-କରି ଭୃତ୍ୟ ଦୁହିଁଙ୍କୁ ହତ୍ୟା କଲେ । ସେ ଲୋକମାନଙ୍କୁ ମିଛରେ ଶୁଣାଇଦେଲେ ଯେ ସେଇ ଦୁହେଁ ରାଜାଙ୍କୁ ହତ୍ୟା କରିଅଛନ୍ତି । ରକ୍ତାକ୍ତ ଖଣ୍ଡାଟି ସେଇମାନଙ୍କ ପାଖରେ ଥିଲା ।

ଅଳ୍ପକାଳ ମଧ୍ୟରେ ଡଙ୍କାନ୍‌ଙ୍କ ପୁତ୍ରଦ୍ୱୟ ମାଲକମ୍ ଓ ଡୋନାଲବେନ ପିତାଙ୍କ ହତ୍ୟା ସମ୍ବାଦ ପାଇଲେ । ସେମାନେ ଭୃତ୍ୟ ଦୁହିଁଙ୍କୁ ଭଲଭାବେ ଜାଣିଥିଲେ । ସେ ଦୁହେଁ ଏଡ଼େ ବିଶ୍ୱାସୀ, ଏଡ଼େ ପ୍ରଭୁଭକ୍ତ ଯେ ସେମାନଙ୍କ ପକ୍ଷରେ ଏପରି ପାପକର୍ମ କରିବା ତ ଦୂରର କଥା, ଏପରି କଳ୍ପନା କରିବା ମଧ୍ୟ ଅସମ୍ଭବ । ସେମାନଙ୍କର ପୂର୍ଣ୍ଣ ସନ୍ଦେହ ହେଲା ଯେ ଏହି ଦୁଷ୍କର୍ମ ନିଶ୍ଚୟ ମାକ୍‌ବେଥ୍ କରିଛନ୍ତି । ତେଣୁ ସେ ଦୁହେଁ ପ୍ରାଣରକ୍ଷା କରିବାକୁ ସ୍କଟ୍‌ଲଣ୍ଡ ଛାଡ଼ି ପଳାଇଲେ । ଏହାଦ୍ୱାରା ମାକ୍‌ବେଥଙ୍କର ଏକପ୍ରକାର ସୁବିଧା ହେଲା । ସେ ପ୍ରଚାର କରିଦେଲେ ଯେ ପୁଅ ଦୁହେଁ ଡଙ୍କାନ୍‌ଙ୍କୁ ହତ୍ୟା କରିବାକୁ ଭୃତ୍ୟ ଦୁହିଁଙ୍କୁ ଶିକ୍ଷା ଦେଇଥିଲେ । ମାକ୍‌ବେଥ୍‌ଙ୍କ ପଥ ପରିଷ୍କୃତ ହୋଇଗଲା । ଡଙ୍କାନଙ୍କ ଅନ୍ତେ ତାଙ୍କ ପୁତ୍ର ରାଜା ହୋଇଥାନ୍ତେ; ମାତ୍ର ସେମାନେ ପଳାୟିତ । ତେଣୁ ମାକ୍‌ବେଥ୍ ରାଜାଙ୍କର ନିକଟତମ କୁଟୁମ୍ବୀ ହୋଇଥିବାରୁ ରାଜସିଂହାସନରେ ବସିଲେ ।

ଏହିପରି ପିଶାଚୀଙ୍କର ଦ୍ୱିତୀୟ ଉକ୍ତିଟି ମଧ୍ୟ ସତ୍ୟରେ ପରିଣତ ହେଲା; ମାତ୍ର ଏତିକରେ ମାକ୍‌ବେଥ୍‌ଙ୍କ ମନରେ ସନ୍ତୋଷ ଆସିଲା ନାହିଁ । ପିଶାଚୀମାନେ କହିଥିଲେ ଯେ ବାଙ୍କୋଙ୍କର ପୁତ୍ର-ପୌତ୍ରମାନେ ରାଜପଦ ଅଧିକାର କରିବେ । ତେଣୁ ସେ ବାଙ୍କୋ ଓ ତାଙ୍କ ପୁତ୍ରଙ୍କୁ ବିପଦର କାରଣ ବୋଲି ମନେକଲେ ।

ମାକ୍‌ବେଥ୍ ପୁଣି ସ୍ତ୍ରୀଙ୍କ ସାଥିରେ ପରାମର୍ଶ କଲେ । ବାଙ୍କୋ ଓ ତାଙ୍କ ପୁଅକୁ କିପରି ବିନାଶ କରିବାକୁ ହେବ ଦୁହେଁ ମିଳି ସେ ବିଷୟ ର ଗୋଟିଏ ଉପାୟ ସ୍ଥିର କଲେ । ମାକ୍‌ବେଥ୍ ଗୋଟିଏ ଭୋଜିର ଆୟୋଜନ କରି ସେଥିରେ ଯୋଗଦେବା ପାଇଁ ସବୁ ଜମିଦାର ଓ ବିଶିଷ୍ଟ ଲୋକମାନଙ୍କୁ ନିମନ୍ତ୍ରଣ କଲେ । ବାଙ୍କୋ ଓ ତାଙ୍କର ପୁଅ ମଧ୍ୟ ନିମନ୍ତ୍ରିତ ହୋଇ ଆସିଲେ । ବିଶିଷ୍ଟ ଅତିଥି ଭାବରେ ସେ ଦୁହିଁଙ୍କୁ ରାଜପ୍ରାସାଦରେ ରଖାଗଲା । ଭୋଜିଦିନ ଦୁହେଁ ଭ୍ରମଣ କରି ବାହାରିଲେ । ମାକ୍‌ବେଥ କେତେଜଣ ଦୁଷ୍ଟ ଲୋକଙ୍କୁ ଅର୍ଥ ଦ୍ୱାରା ବଶୀଭୂତ କରି ସେ ଦୁହିଁଙ୍କୁ ହତ୍ୟା କରିବାପାଇଁ ନିଯୁକ୍ତ କରିଥିଲେ । ସେ ଦୁହେଁ ଗଡ ବାହାରେ ବାଙ୍କୋ ଓ ତାଙ୍କ ପୁତ୍ରଙ୍କୁ ଆକ୍ରମଣ କଲେ । ଏହା ଫଳରେ ବାଙ୍କୋ ନିହତ ହେଲେ, ମାତ୍ର ତାଙ୍କ ପୁତ୍ର କୌଶଳକ୍ରମେ ଇଂଲଣ୍ଡକୁ ପଳାୟନ କଲେ ।

ଭୋଜସଭାବେଳେ ଦେଖାଗଲା ଯେ ବାଙ୍କୋ ଓ ତାଙ୍କ ପୁଅ ନାହାନ୍ତି । ଏଥିମଧ୍ୟରେ ମାକବେଥ୍ ସମ୍ବାଦ ପାଇ ସାରିଥିଲେ ଯେ ବାଙ୍କୋ ନିହତ ହୋଇଅଛନ୍ତି ଓ ତାଙ୍କ ପୁତ୍ର ପଳାୟନ କରିଅଛନ୍ତି । ମାତ୍ର ଏହି ସମ୍ବାଦରେ ସେ ବିଚଳିତ ନ ହୋଇ ବରଂ ଆଶ୍ୱସ୍ତ ହୋଇଥିଲେ । ବାଙ୍କୋଙ୍କୁ ସେ ସନ୍ଦିଗ୍ଧ ଦୃଷ୍ଟିରେ ଦେଖୁଥିଲେ । କାରଣ ମାକ୍‌ବେଥଙ୍କ ସହିତ ସେ ପିଶାଚୀମାନଙ୍କଠାରୁ ସବୁ ଭବିଷ୍ୟଦ୍ ବାଣୀ ଶୁଣିଥିଲେ । ଡଙ୍କାନ୍‌ଙ୍କ ହତ୍ୟା ବିଷୟରେ ସେ ମାକ୍‌ବେଥ୍‌ଙ୍କୁ ସନ୍ଦେହ କରୁଥିଲେ । ତେଣୁ ବାଙ୍କୋଙ୍କ ମୃତ୍ୟୁରେ ମାକ୍‌ବେଥ ନିଜକୁ ଅଧିକ ନିରାପଦ ମନେକଲେ । ସେ ଆନନ୍ଦରେ ଭୋଜ ସଭାରେ ଉପସ୍ଥିତ ହେଲେ ।

ସେ ସଭାଗୃହରେ ପ୍ରବେଶ କରି ଦେଖିଲେ ଯେ ଜଣେ କିଏ ତାଙ୍କ ଆସନରେ ବସିଛି । ସେ ତାହାକୁ ନିରୀକ୍ଷଣ କରି ଜାଣିଲେ

ଯେ ପ୍ରକୃତରେ ସେ କେବଳ ନିମନ୍ତ୍ରିତ ଅତିଥି ନୁହନ୍ତି; ସେ ଦେଖନ୍ତି ବାଙ୍କୋଙ୍କର ପ୍ରେତମୂର୍ତ୍ତି । ଅବଶ୍ୟ ସଭାର ଅନ୍ୟ କେହି ଏହି ପ୍ରେତମୂର୍ତ୍ତିକୁ ଦେଖିପାରୁ ନଥିଲେ । ମାକ୍‌ବେଥ ଏପରି ଅବସ୍ଥାରେ ଘୋର ଭୟରେ ଚିତ୍କାର କରିଉଠିଲେ । ଅତିଥିମାନେ ରାଜାଙ୍କର ଏପରି ଅଦ୍ଭୁତ ବ୍ୟବହାରରେ ବିସ୍ମିତ ହୋଇପଡିଲେ । ସେମାନେ ମନେକଲେ ଯେ ହଠାତ୍ ରାଜା କୌଣସି ରୋଗରେ ଆକ୍ରାନ୍ତ ହୋଇପଡିଛନ୍ତି । ରାଣୀ ଅବସ୍ଥାକୁ ସମ୍ଭାଳି ନେବା ଉଦ୍ଦେଶ୍ୟରେ କହିଉଠିଲେ, "ମୋ ସ୍ୱାମୀଙ୍କର ଅନେକ ବର୍ଷହେଲା ଗୋଟାଏ ରୋଗ ଅଛି । ବେଳେବେଳେ ତାଙ୍କର ଏପରି ଘଟିଥାଏ । ଆପଣମାନେ ଚିନ୍ତା କରନ୍ତୁନାହିଁ । କିଛି ସମୟ ପରେ ସେ ଆପେ ଆପେ ସୁସ୍ଥ ହୋଇଯିବେ ।

ଏହାପରେ ଛଳନା କରି ରାଣୀ ମାକ୍‌ବେଥ୍‌ଙ୍କୁ ଟିକିଏ ନିର୍ଜନ ଜାଗାକୁ ନେଇଯାଇ କହିଲେ, "ତୁମେ କେଡ଼େ ଭୟାଳୁ । ଏପରି ଚିତ୍କାର କରିବାରେ କି ଦରକାର ଥିଲା । ଭଦ୍ରଲୋକମାନେ ମନରେ କଅଣ ବିଚାରୁଥିବେ ?"

କିଛି ସମୟ ପରେ ପ୍ରେତମୂର୍ତ୍ତିଟି ଅଦୃଶ୍ୟ ହୋଇଗଲା । ମାକ୍‌ବେଥ୍ ଆପଣା ଆସନରେ ବସି ଏକ ଗ୍ଲାସ ମଦ୍ୟ ଆଣିବାପାଇଁ ଜଣେ ଭୃତ୍ୟକୁ ଆଦେଶ ଦେଲେ । ଭୃତ୍ୟ ମଦ୍ୟପାତ୍ର ଆଣିଦେଲା । ମାକ୍‌ବେଥ୍ ତାହାକୁ ଧରି ଅତିଥିମାନଙ୍କୁ ସମ୍ବୋଧନ କରି କହିଲେ, "ମୁଁ ଆପଣମାନଙ୍କର ସମସ୍ତଙ୍କର ସ୍ୱାସ୍ଥ୍ୟ କାମନା କରି ପାନ କରୁଅଛି । ଦୁଃଖର ବିଷୟ ଏହି ଯେ ଆମର ପରମବନ୍ଧୁ ବାଙ୍କୋ ଏହି ଉତ୍ସବରେ ଉପସ୍ଥିତ ନାହାନ୍ତି ।" ମାକ୍‌ବେଥ ଏତିକି କହିଲା-ମାତ୍ରେ ବାଙ୍କୋର ପ୍ରେତମୂର୍ତ୍ତି ପୁନରାୟ ଦୃଷ୍ଟିଗୋଚର ହେଲା । ତାଙ୍କ ମୁଖମଣ୍ଡଳ ବିବର୍ଣ୍ଣ ହୋଇଗଲା । ସେ ଆଉ ନିଜକୁ ଆୟତ୍ତ

କରି ରଖିପାରିଲେ ନାହିଁ । ସେ ଯଥେଚ୍ଛା ପ୍ରଳାପ କରିବାକୁ ଲାଗିଲେ । ରାଣୀ ଦେଖିଲେ ଯେ ଅବସ୍ଥା ସାଙ୍ଘାତିକ ହୋଇପଡ଼ୁଛି । ମାକବେଥ୍ ହୁଏତ ସବୁ ଗୋପନ କଥା ପ୍ରକାଶ କରିପକାଇବେ । ତେଣୁ ସେ ଅତିଥିମାନଙ୍କୁ କହିଲେ, "ଅତ୍ୟନ୍ତ ପରିତାପର ବିଷୟ ଏହି ଯେ ମହାରାଜା ପୁଣି ରୋଗାକ୍ରାନ୍ତ ହୋଇପଡ଼ିଛନ୍ତି । ତେଣୁ ଆପଣମାନଙ୍କୁ ବିଦାୟ ନେବାକୁ ଅନୁରୋଧ କରୁଛି ।"

ଅତିଥିମାନେ ବିଦାୟ ନେଇଗଲେ । ମାକବେଥ ପୁଣି ଥରେ ପିଶାଚ ମାନଙ୍କୁ ସାକ୍ଷାତ୍ କରିବାକୁ ସ୍ଥିର କଲେ । ତାଙ୍କର ଆଶା ଥିଲା ଯେ ସେମାନେ ତାଙ୍କୁ ଆହୁରି କିଛି ପରାମର୍ଶ ଦେବେ । ସେ ବଡ଼ ହେବାକୁ ଆଶାକରି ଗୁରୁଜଣଙ୍କୁ ହତ୍ୟା କରିସାରିଥିଲେ । ରାଜସିଂହାସନରେ ନିଶ୍ଚିନ୍ତ ହୋଇ ରହି ନ ପାରିଲେ ଲାଭ କଅଣ ? ତେଣୁ ସେ ଭାବିଲେ ଯେ ନିଜ ଆସନକୁ ଦୃଢ଼ କରିବାପାଇଁ ସେ ଯେକୌଣସି ପାପକାର୍ଯ୍ୟ କରିବେ । ମାକ୍‌ଡଫ୍‌ଙ୍କ ପ୍ରତି ତାଙ୍କର ସନ୍ଦେହ ଥିଲା । ତେଣୁ କିପରି ମାକ୍‌ଡଫ୍‌ଙ୍କୁ ହତ୍ୟା କରିବେ, ଏହା ତାଙ୍କର ପ୍ରଧାନ ଚିନ୍ତା ହେଲା ।

ମାକବେଥ ଏକାକୀ ସେହି ନିର୍ଜନ ପ୍ରାନ୍ତରକୁ ଗଲେ । ପିଶାଚୀ ମାନଙ୍କ ସଙ୍ଗେ ତାଙ୍କର ସାକ୍ଷାତ ହେଲା । ସେମାନେ ମାକ୍‌ବେଥଙ୍କୁ କହିଲେ, "ମାକଡଫ୍‌କୁ ସାବଧାନ ରହିଥିବ । ସେ ତୁମ୍ଭର ଅନିଷ୍ଟ କରିବାକୁ ସର୍ବଦା ଚେଷ୍ଟିତ । ମାତ୍ର ସାଧାରଣ ଭାବରେ ଯେ ମାତୃଗର୍ଭରୁ ଭୂମିଷ୍ଠ ହୋଇଥିବ, ସେ ତୁମ୍ଭର କିଛି କ୍ଷତି କରିପାରିବ ନାହିଁ । ଆଉ ଗୋଟିଏ କଥା ଯେତେଦିନ ଯାଏ ବର୍ଣ୍ଣାମ୍ ଜଙ୍ଗଲ ଡ଼ନ୍‌ସିନେନ୍ ଦୁର୍ଗକୁ ଆସିନାହିଁ ସେତେଦିନଯାଏ କେହି ତୁମକୁ ପରାସ୍ତ କରିପାରିବେ ନାହିଁ ।"

ଏହିପରି କହି ପିଶାଚୀମାନେ ଉଭେଇଗଲେ ।

ଡନ୍‌ସିନେନ୍ ଦୁର୍ଗଟି ଗୋଟିଏ ପାହାଡ଼ ଉପରେ ଅବସ୍ଥିତ । ଏହି ଦୁର୍ଗଠାରୁ କିଛି ଦୂରରେ ବର୍ଣ୍ଣାମ ଜଙ୍ଗଲ ବ୍ୟାପି ରହିଛି । ପିଶାଚୀମାନଙ୍କ କଥା ଶୁଣି ମାକ୍‌ବେଥ୍ ନିଶ୍ଚିନ୍ତ ହେଲେ । ଜଙ୍ଗଲ କପରି ଦୁର୍ଗ ପର୍ଯ୍ୟନ୍ତ ଆସିପାରିବ ? ଏହା ସମ୍ପୂର୍ଣ୍ଣ ଅସମ୍ଭବ । ତେଣୁ କେହି ମାକ୍‌ବେଥ୍‌ଙ୍କୁ ମଧ୍ୟ ପରାସ୍ତ କରିପାରିବ ନାହିଁ ବୋଲି ତାଙ୍କର ଧାରଣା ହେଲା । ମାକଡଫ୍‌ଙ୍କ ବିଷୟରେ ତାଙ୍କର ଆଗରୁ ସନ୍ଦେହ ଥିଲା । ପିଶାଚୀମାନଙ୍କ କଥାରୁ ତାଙ୍କର ସନ୍ଦେହ ଦୃଢ଼ୀଭୂତ ହେଲା । ତେଣୁ ଯେକୌଣସି ଉପାୟରେ ମାକଡଫ୍‌ଙ୍କୁ ହତ୍ୟା କରିବାକୁ ସେ ପ୍ରତିଜ୍ଞା କଲେ ।

ମାକ୍‌ବେଥ୍ ନିଜ ଦୁର୍ଗକୁ ଫେରିଆସି ସମ୍ବାଦ ପାଇଲେ ଯେ ମାକଡଫ ସ୍କଟ୍‌ଲଣ୍ଡରୁ ପଳାଇଯାଇ ଇଂଲଣ୍ଡରେ ଡଙ୍କାନ୍‌ଙ୍କ ପୁତ୍ର ମାଲକମ୍‌ଙ୍କ ସଙ୍ଗେ ଯୋଗ ଦେଇଛନ୍ତି । ଏହି ସମ୍ବାଦରେ ସେ ନିତାନ୍ତ କ୍ଷୁବ୍ଧ ହୋଇ ଉଠିଲେ । ମାକଡଫଙ୍କୁ ହତ୍ୟା କରିବାର କୌଣସି ଉପାୟ ତାଙ୍କୁ ଦେଖାଗଲା ନାହିଁ । ଯାହାହେଉ ସେ ଶୁଣି ପାରିଲେ ଯେ ମାକ୍‌ଡଫ୍‌ଙ୍କ ସ୍ତ୍ରୀ ଓ ପୁତ୍ରକନ୍ୟା ତାଙ୍କ ସଙ୍ଗରେ ଯାଇ ନାହାନ୍ତି । ତେଣୁ ସେ ଦୁଇଜଣ ଦୁର୍ବୃତ୍ତ ଲୋକଙ୍କୁ ପଠାଇ ସେମାନଙ୍କୁ ହତ୍ୟା କରାଇଲେ ।

ଏଥିମଧ୍ୟରେ ମାକଡଫ୍ ଓ ମାଲକମ୍ ଇଂଲଣ୍ଡକୁ ପଳାଇ ଯାଇ ନିଶ୍ଚିନ୍ତ ହୋଇ ରହି ନଥିଲେ । ଦୁର୍ବୃତ୍ତ କିପରି ମାକ୍‌ବେଥ୍‌ଙ୍କୁ ସ୍କଟ୍‌ଲଣ୍ଡର ସିଂହାସନରୁ ତଡ଼ିବେ ସେଥିର ଉପାୟ ଚିନ୍ତା କରୁଥିଲେ । ଯୁଦ୍ଧରେ ପରାସ୍ତ ନ ହେଲେ ମାକବେଥ୍ ସିଂହାସନ ତ୍ୟାଗକରିବାର ସମ୍ଭାବନା ନଥିଲା । ତେଣୁ ସେମାନେ ସୈନ୍ୟ ସଂଗ୍ରହ କରିବାରେ ଲାଗିପଡ଼ିଲେ । ଏହି ସମୟରେ ମାକ୍‌ଡଫ୍ ସମ୍ବାଦ ପାଇଲେ ଯେ ମାକ୍‌ବେଥ୍‌ଙ୍କ ଚକ୍ରାନ୍ତରେ ତାଙ୍କର ପତ୍ନୀ ଓ ପୁତ୍ରକନ୍ୟାମାନଙ୍କୁ ହତ୍ୟା

କରାଯାଇଅଛି । ତେଣୁ ସେ ଶୀଘ୍ର ପ୍ରତିହିଂସା ନେବାପାଇଁ ଅଧୀର ହୋଇପଡ଼ିଲେ । ଗୋଟିଏ ବିରାଟ ସୈନ୍ୟଦଳ ଘେନି ମାକଡ଼ଫ ଓ ମାଲକମ୍ ସ୍କଟଲଣ୍ଡ ଆକ୍ରମଣ କରିବାକୁ ବାହାରିଲେ । ସ୍କଟଲଣ୍ଡର ଜମିଦାର ଓ ଧନିକ ଶ୍ରେଣୀର ଲୋକେ ମାକବେଥ୍‌ଙ୍କ ଅନ୍ୟାୟ ଅତ୍ୟାଚାର ଫଳରେ ତାଙ୍କର ବିରୋଧୀ ହୋଇ ଉଠିଥିଲେ । ଏବେ ମାକ୍‌ଡଫ୍ ଓ ମାଲ୍‌କମ୍‌ଙ୍କ ସୈନ୍ୟମାନେ ମାକ୍‌ବେଥ୍‌ଙ୍କ ବିରୋଧରେ ଯୁଦ୍ଧକରିବାକୁ ଯାଉଥିବାରୁ ସେମାନେ ମଧ୍ୟ ଏହି ସୈନ୍ୟମାନଙ୍କ ସଙ୍ଗେ ଯୋଗଦେଲେ ।

ମାକ୍‌ବେଥ୍ ଶତ୍ରୁ ଆସୁଥିବାର ଜାଣିପାରି ଡନସିନେନ୍ ଦୁର୍ଗକୁ ଚାଲିଗଲେ । ଏହି ଦୁର୍ଗଟି ସୁଦୃଢ଼ ଥିଲା । ସେ ନିଜର ସୈନ୍ୟମାନଙ୍କୁ ଦୁର୍ଗ ରକ୍ଷା ପାଇଁ ନିଯୁକ୍ତ କଲେ ।

ମାକ୍‌ବେଥ ଡଙ୍କାନଙ୍କୁ ହତ୍ୟା କରି ରାଜସିଂହାସନରେ ବସିଥିଲେ ସତ୍ୟ, ମାତ୍ର ଦିନକପାଇଁ ସୁଦ୍ଧା ସେ ସୁଖ ଶାନ୍ତି ପାଇନଥିଲେ । ତାଙ୍କ ସ୍ତ୍ରୀ ମନରେ ଉଚ୍ଚ ଅଭିଳାଷ ରଖି ସ୍ୱାମୀଙ୍କୁ ଉତ୍ସାହ ଦେଇ ଆସୁଥିଲେ । ଏହିପରି ଉତ୍ସାହିତ ହୋଇ ମାକ୍‌ବେଥ୍ ଗୋଟିକ ପରେ ଗୋଟିଏ ପାପକର୍ମ କରି ଚାଲିଥିଲେ । ସ୍ୱାମୀଙ୍କ ମନ କାଳେ ଦୁର୍ବଳ ହୋଇ ପଡ଼ିବ ଓ ସେ ଅନ୍ୟାୟ କରି ବଡ଼ ହେବା କଥା ଭୁଲିଯିବେ ସେଥିପାଇଁ ଶ୍ରୀମତୀ ମାକ୍‌ବେଥ୍ ତାଙ୍କୁ ବରାବର ଜଗି ରହିଥିଲେ । ମାତ୍ର କ୍ରମେ ତାଙ୍କର ଉତ୍ସାହ ଭାଙ୍ଗି ପଡ଼ିଲା । ସେ ସବୁବେଳେ ଚିନ୍ତା କରି କରି ରୋଗଗ୍ରସ୍ତ ହୋଇପଡ଼ିଲେ । ରାତିରେ ତାଙ୍କୁ ପ୍ରାୟ ନିଦ ହେଉନଥିଲା । ଟିକିଏ ନିଦ ଆସିଲାକ୍ଷଣି ଭୟଙ୍କର ସ୍ୱପ୍ନ ଦେଖାଦିଏ । ସେ ପାଗଳାମୀ ପ୍ରାପ୍ତ ହୋଇଗଲେ । ଅନେକ ସମୟରେ ସେ ନିଜ ହାତକୁ ଗୁହିଁ କହୁଥିଲେ, "ହାତରେ ଏତେ ରକ୍ତ ଲାଗିରହିଛି କିପରି ? ବୁଢ଼ା ଡଙ୍କାନ୍ ଦେହରେ ଏତେ ରକ୍ତ

ଆସିଲା କାହିଁ ?" ଆଉ କେତେବେଳେ ସେ ଚିତ୍କାର କରୁଥିଲେ, "ମାକ୍‌ଡଫଙ୍କ ସ୍ତ୍ରୀ ଗଲେ କୁଆଡ଼େ ? ବାଟକୁ କାହାନ୍ତି ?" ନିଜ ପାପକର୍ମ ଚିନ୍ତା କରି କରି ସେ ଏପରି ବାତୁଳତା ପ୍ରକାଶ କରୁଥିଲେ । ଚିକିତ୍ସକମାନେ ଔଷଧ ଦେଲେ ସତ୍ୟ, ମାତ୍ର କିଛି ଫଳ ହେଲାନାହିଁ । ଶେଷରେ ସେ ଦୁଃଖ ଓ ଅନୁଶୋଚନାରେ ଆତ୍ମହତ୍ୟା କଲେ ।

ମାକ୍‌ବେଥ୍‌ ଭାବୁଥିଲେ ଯେ ସେ ସାମାନ୍ୟ ଜମିଦାରରୁ ଉଠି ସମଗ୍ର ସ୍କଟଲଣ୍ଡର ରାଜା ହେବେ, ଲକ୍ଷ ଲକ୍ଷ ଲୋକ ତାଙ୍କୁ ଆଦର ଗୌରବ କରିବେ ତାଙ୍କ ଜୀବନ ମହାସୁଖରେ କଟିବ । କିନ୍ତୁ ସେ ଦେଖିଲେ ଯେ ରାଜା ହେଲେହେଁ ସେ କାହାରି ସ୍ନେହ ଶ୍ରଦ୍ଧା ପାଇନାହାନ୍ତି ବରଂ ଲୋକମାନଙ୍କର ଭୟ ଓ ଘୃଣାର ପାତ୍ର ହୋଇଅଛନ୍ତି । ମୁହୂର୍ତ୍ତେକ ପାଇଁ ସୁଦ୍ଧା ସେ ଶାନ୍ତି ପାଇପାରିନାହାନ୍ତି । ଜୀବନରେ ସେ କିଛି ପାଇନାହାନ୍ତି; ସବୁ ହରାଇଛନ୍ତି । ବନ୍ଧୁବାନ୍ଧବ କେହି ତାଙ୍କର ନାହାନ୍ତି । ଯେଉଁ ସ୍ତ୍ରୀ ତାଙ୍କୁ ପଦେ ପଦେ ଉତ୍ସାହ ଦେଉଥିଲେ, ସେ ମଧ୍ୟ ନାହାନ୍ତି । ପ୍ରଜାମାନେ କେହି ତାଙ୍କୁ ସମ୍ମାନ କରୁନାହାନ୍ତି । ନିଜର ସୈନ୍ୟମାନଙ୍କୁ ମଧ୍ୟ ସେ ବିଶ୍ୱାସ କରିପାରୁନାହାନ୍ତି । ତେବେ ଏ ଜୀବନରେ ଲାଭ କଅଣ ? ମାକବେଥ୍‌ ଭାବିଲେ ଯେ ଏପରି ଘୃଣ୍ୟ ଜୀବନ ଯାପନ କରିବା ଅପେକ୍ଷା ମରଣ ବରଂ ଶ୍ରେୟସ୍କର ।

ମାକ୍‌ବେଥ ସମ୍ବାଦ ପାଇଲେ ଯେ ମାଲ୍‌କମ୍‌ଙ୍କ ସୈନ୍ୟମାନେ ଦୁର୍ଗ ଆକ୍ରମଣ କରିବାକୁ ଆସୁଛନ୍ତି । ତାଙ୍କର ମନ ପରିବର୍ତ୍ତିତ ହୋଇଗଲା । ସେ ମୃତ୍ୟୁପାଇଁ ପ୍ରସ୍ତୁତ; କିନ୍ତୁ ଶତ୍ରୁ ଯେତେବେଳେ ଦ୍ୱାରଦେଶରେ ଉପସ୍ଥିତ, ତା ସହିତ ଯୁଦ୍ଧ ନ କରିବେ କିପରି ? ସେ କହିଲେ, "ମୋର ସୈନ୍ୟମାନେ ସାହା କରନ୍ତୁ ନା କାହିଁକି, ମୁଁ ନିଶ୍ଚୟ ଯୁଦ୍ଧ କରିବି । ମୃତ୍ୟୁକୁ ଭୟ କରିବାର କାରଣ ନାହିଁ ।

ବର୍ଣ୍ଣାମ ଜଙ୍ଗଲ ଏପର୍ଯ୍ୟନ୍ତ ନ ଆସିଲେ ମୋର ମୃତ୍ୟୁ ହେବନାହିଁ ବୋଲି ପିଶାଚୀମାନେ କହିଅଛନ୍ତି । ଏହି ଅସମ୍ଭବ କଥା ସମ୍ଭବ ନ ହେବାଯାକେ ମୋର ମୃତ୍ୟୁକୁ ଭୟ କରିବାର କାରଣ ନାହିଁ ।”

ସେ ନିଜର ସୈନ୍ୟମାନଙ୍କୁ ନେଇ ଶତ୍ରୁକୁ ଆକ୍ରମଣ କରିବା ଉଦ୍ଦେଶ୍ୟରେ ଦୁର୍ଗରୁ ବାହାରିପଡ଼ିଲେ । ଠିକ୍ ଏହି ସମୟରେ ଜଣେ ଗୁପ୍ତଚର ଆସି ଏକ ଅଦ୍ଭୁତ ସମ୍ବାଦ ଦେଲା । ସେ କହିଲା, “ମହାରାଜ, ମୁଁ ପାହାଡ଼ ଉପରେ ଜଗିରହିଥିଲି । ମୁଁ ବର୍ଣ୍ଣାମ ଜଙ୍ଗଲଆଡ଼କୁ ଚାହିଁଥିଲି । ମୋତେ ଜଣାଗଲା ଯେ ସମଗ୍ର ଜଙ୍ଗଲଟା ଏଆଡ଼କୁ ଚାଲିଆସୁଛି ।”

ଏତିକି ଶୁଣି ମାକବେଥ୍ କ୍ରୋଧରେ କହିଲେ, “ମିଥ୍ୟାବାଦୀ ! ଏହା କି କେବେ ସମ୍ଭବ ହୋଇପାରେ ?”

କିନ୍ତୁ ଗୁପ୍ତଚରର କଥା ସତ୍ୟ । ମାଲ୍‌କମ୍ ନିଜର ସୈନ୍ୟ-ସଂଖ୍ୟା ଜଣା ନ ପଡ଼ିବ ବୋଲି ଗୋଟିଏ କୌଶଳ କରିଥିଲେ । ସେ ସୈନ୍ୟମାନଙ୍କୁ ଆଦେଶ ଦେଇଥିଲେ ଯେ ସେମାନେ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଗଛର ଡାଳ କାଟି ହାତରେ ଧରିବେ । ତାହାହେଲେ ଡାଳପତ୍ର ଉହାଡ଼ରେ ରହିଥିବାରୁ ଶତ୍ରୁପକ୍ଷ ସେମାନଙ୍କୁ ଦେଖିପାରିବେ ନାହିଁ କି ସେମାନଙ୍କ ସଂଖ୍ୟା କଳନା କରିପାରିବେ ନାହିଁ ।

ସୈନ୍ୟମାନେ ଗୋଟିଏ ଗୋଟିଏ ଡାଳ ଧରି ଚାଲୁଥିବାରୁ ଗୁପ୍ତଚର ସେମାନଙ୍କୁ ଦେଖିପାରିନଥିଲା, ମାତ୍ର ଡାଳଗୁଡ଼ିକ ଆଗକୁ ଆସୁଥିବାର ଦେଖି ସେ ମନେ କରିଥିଲା ଯେ ଜଙ୍ଗଲଟା ଆଗକୁ ମାଡ଼ିଆସୁଛି । ତେଣୁ ସେ ଯାହା କହିଥିଲା, ତାହା ଏକପ୍ରକାର ସତ୍ୟ ।

ମାକ୍‌ବେଥ୍‌ ମନରେ ଦୃଢ଼ ଆଶା ରଖିଥିଲେ ଯେ ବର୍ଣ୍ଣାମ ଜଙ୍ଗଲ ଦୁର୍ଗଆଡ଼କୁ ନ ଆସିବାଯାଏ ସେ କେବେଁ ପରାସ୍ତ ହେବେ ନାହିଁ । ଏପରି ଘଟିବା ସେ ଅସମ୍ଭବ ମନେ କରିଥିଲେ; ମାତ୍ର ଏବେ ସେହି ଅସମ୍ଭବ କଥା ସମ୍ଭବ ହେଲା । ସେ ବର୍ତ୍ତମାନ ମନେକଲେ ଯେ ପିଶାଚୀମାନେ ତାଙ୍କୁ ବୃଥା ଆଶା ଦେଖାଇଥିଲେ । ତଥାପି ତାଙ୍କର ଆଉ ଗୋଟିଏ ଆଶା ଥିଲା, ଯେ ସାଧାରଣ ଭାବରେ ମାତୃଗର୍ଭରୁ ଭୂମିଷ୍ଠ ହୋଇଥିବ, ସେ ମଣିଷ ତାଙ୍କର କିଛି କ୍ଷତି କରିପାରିବ ନାହିଁ । ମାକ୍‌ବେଥ୍‌ ଭାବିବାକୁ ଲାଗିଲେ, ଏହାର ଅନ୍ୟ କୌଣସି ଅର୍ଥ ହୋଇ ନ ପାରେ । ସାଧାରଣ ମନୁଷ୍ୟଦ୍ୱାରା ମୋର ମୃତ୍ୟୁ ହେବନାହିଁ । ମୋର ଶତ୍ରୁମାନେ ସମସ୍ତେ ସାଧାରଣ ମନୁଷ୍ୟ । ମୁଁ ଏମାନଙ୍କୁ ଭୟ କରିବ କାହିଁକି ?

ଏହିପରି ଭାବି ସେ ସାହସର ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ ।

ମାକ୍‌ଡଫ୍‌ ସୈନ୍ୟମାନଙ୍କର ସେନାପତି ଥିଲେ । ସେ ମାକ୍‌ବେଥ୍‌ଙ୍କୁ ମାରିବାକୁ ପ୍ରତିଜ୍ଞା କରିଥିଲେ । ମାକ୍‌ବେଥ ତାଙ୍କର ସ୍ତ୍ରୀ ଓ ପୁତ୍ର କନ୍ୟାଙ୍କୁ ହତ୍ୟା କରିଥିବାରୁ ସେ ତାହାଁର ପ୍ରତିଶୋଧ ନେବାକୁ ବିଶେଷ ଇଚ୍ଛୁକ ଥିଲେ । ସେ ଆକ୍ରମଣ କରିବା ଉଦ୍ଦେଶ୍ୟରେ ମାକ୍‌ବେଥ୍‌ଙ୍କ ଆଡ଼କୁ ଅଗ୍ରସର ହେଲେ । ତହୁଁ ମାକ୍‌ବେଥ କହିଲେ "ପ୍ରାଣରେ ଆଶା ଥିଲେ ଫେରି ଯା । ତୋର ସ୍ତ୍ରୀ ପୁତ୍ରକନ୍ୟା ମୋ ହାତରେ ପ୍ରାଣ ହରାଇଅଛନ୍ତି । ମୋ ହାତରେ ତୁ ନିଜର ମୃତ୍ୟୁକୁ ବରଣ କରିବାକୁ ଆସୁଛୁ କାହିଁକି ?"

ମାତ୍ର ମାକ୍‌ଡଫ୍‌ ଏ ଧମକପ୍ରତି ଭ୍ରୂକ୍ଷେପ ନ କରି ମାକ୍‌ବେଥଙ୍କୁ ଆକ୍ରମଣ କଲେ । ଦୁହିଁଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଚାଲିଲା । କିଛି ସମୟ ପରେ ମାକ୍‌ବେଥ୍‌ କହିଲେ, "ମାକ୍‌ଡଫ୍‌, ତୁ ବୃଥା

ଶକ୍ତି କ୍ଷୟ କରୁଛୁ । ମୁଁ ସାଧାରଣ ଲୋକ ନୁହେଁ ଯେ ତୁ ମୋତେ ମାରି ପାରିବୁ । ବୋଧହୁଏ ତୁ ଜାଣୁନା ଯେ ସାଧାରଣ ଭାବରେ ମାତୃଗର୍ଭରୁ ଜନ୍ମିଥିବା କୌଣସି ଲୋକ ହାତରେ ମୋର ମୃତ୍ୟୁ ହେବନାହିଁ ।" ଏହା ଶୁଣି ମାକ୍‌ଡ଼ଫ୍‌ କହିଲେ, "ତୋର ଏ କଥାରେ ମୁଁ ବିସ୍ମିତ ହେଉଛି । ତୁ ଏଡ଼େ ଅଧମ ଯେ ଏହି କଥା ଉପରେ ନିର୍ଭର କରି ବସିଛୁ । ତେବେ ମୁଁ କହିପାରେ ଯେ ମୁଁ ସାଧାରଣ ଲୋକଙ୍କ ପରି ମାତୃଗର୍ଭରୁ ଭୂମିଷ୍ଠ ହୋଇନାହିଁ । ଜନ୍ମର ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଜଣେ ଚିକିତ୍ସକ ଅସ୍ତ୍ରଚିକିତ୍ସା କରି ମୋତେ ମାତୃଗର୍ଭରୁ ବାହାର କରିଥିଲେ । ତେଣୁ ମୁଁ ସାଧାରଣ ଭାବରେ ଜନ୍ମିନାହିଁ ।"

ଏହା ଶୁଣିଲାମାତ୍ରେ ମାକ୍‌ବେଥଙ୍କର ମସ୍ତିଷ୍କ ଘୂରିବାକୁ ଲାଗିଲା । ସେ ଭାବିଲେ ଯେ ପିଶାଚୀମାନେ ବର୍ଣ୍ଣାମ ଜଙ୍ଗଲ ଡନ୍‌ସିନେନ୍‌କୁ ଆସିବା ବିଷୟରେ ଯେପରି ତାଙ୍କୁ ଭ୍ରାନ୍ତଧାରଣା ଦେଇଥିଲେ ଏଥିରେ ମଧ୍ୟ ସେହିପରି ତାଙ୍କ ମନରେ ଭ୍ରାନ୍ତ ଧାରଣା ଜନ୍ମାଇ ଅଛନ୍ତି । ତାଙ୍କର ସବୁ ଆଶା ଭରସା ଉଭେଇ ଗଲା । ସେ ହତାଶ ହୋଇ କହିଲେ, "ମାକଡ଼ଫ୍‌ ! ମୁଁ ଆଉ ଯୁଦ୍ଧ କରିବାକୁ ପ୍ରସ୍ତୁତ ନୁହେଁ ।"

ମାକଡ଼ଫ୍‌ ଘୃଣା ସହକାରେ କହିଲେ, "ତେବେ ମୋର ବନ୍ଦୀତା ସ୍ୱୀକାର କର । ତୁ ଭୀରୁ, ତୁ କାପୁରୁଷ । ମୁଁ ତୋତେ ନେଇ ସମସ୍ତଙ୍କୁ ଦେଖାଇ କହିବି ଯେ ତୋଭଳି ନିର୍ଦ୍ଦୟ ଦୁଷ୍ଟଲୋକ ଜଗତରେ ନାହାନ୍ତି ।"

ଏକଥା ଶୁଣି ମାକ୍‌ବେଥ୍‌ ମନରେ ପୁଣି କ୍ରୋଧ ଆସିଲା । ସେ କହିଲେ, "ନା, ନା, ମାକ୍‌ବେଥ୍‌ ତାହା କରି ନ ପାରେ । ସେ କ ପ୍ରାଣଲାଗି ତୋର ପାଦତଳେ ଶରଣ ପଶିବ ? ଦୁନିଆର

ଲୋକେ ତାକୁ ଉପହାସ କରିବେ ? ଆ, ମୁଁ ଯୁଦ୍ଧ କରିବାକୁ ପ୍ରସ୍ତୁତ ।”

ପୁଣି ଉଭୟଙ୍କ ମଧ୍ୟରେ ଯୁଦ୍ଧ ଚାଲିଲା । ଦୀର୍ଘକାଳ ଯୁଦ୍ଧ ପରେ ମାକବେଥ ନିହତ ହେଲେ । ଏହିପରି ମାକ୍‌ବେଥ୍‌ଙ୍କ ପାପ ପୂର୍ଣ୍ଣ ଜୀବନରେ ଯବନିକା ପାତ ହେଲା । ମାଲକମ୍ ମାକ୍‌ଡଫଙ୍କ ସହାୟତାରେ ସ୍କଟଲଣ୍ଡର ରାଜ ସିଂହାସନରେ ଉପବିଷ୍ଟ ହେଲେ । ମାକଡଫ୍ ମାଲକମଙ୍କୁ ସାହାଯ୍ୟ କରିଥିବାରୁ ସେ ଫାଇଫ୍ ଜମିଦାରୀ ପୁରସ୍କାର ସ୍ୱରୂପ ପାଇଲେ । ମାଲ୍‌କମ୍ ଓ ପରେ ତାଙ୍କ ପୁତ୍ର ପୌତ୍ରାଦିମାନେ ସ୍କଟ୍‌ଲଣ୍ଡର ଅଧିକାରୀ ହେଲେ ।

ଏହିପରି ପିଶାଚୀମାନଙ୍କର ଭବିଷ୍ୟଦ୍‌ବାଣୀ ସଫଳ ହେଲା ।

---

# ରାଜା ଲିଅର୍

ବହୁତ ବର୍ଷ ପୂର୍ବେ ଇଂଲଣ୍ଡରେ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ନାମ ଥିଲା ଲିଅର୍ । ତାହାଙ୍କ ରାଜତ୍ୱ କାଳରେ ପ୍ରଜାମାନେ ସୁଖ ଶାନ୍ତିରେ ବାସ କରୁଥିଲେ । ଦୁଷ୍ଟଙ୍କୁ ଦମନ କରିବା ଓ ଶିଷ୍ଟଙ୍କୁ ପାଳନ କରିବା ତାଙ୍କର ମନ୍ତ୍ର ଥିଲା । ତେଣୁ ପ୍ରଜାମାନେ ତାଙ୍କୁ ପିତାସଦୃଶ ଭକ୍ତି କରୁଥିଲେ । ଦୀର୍ଘକାଳ ରାଜତ୍ୱ କଲାପରେ ଲିଅର୍ ବୃଦ୍ଧ ବୟସରେ ପଦାର୍ପଣ କଲେ । ତାଙ୍କର ଶକ୍ତି କମି ଆସିଲା । ସେ ଭାବିଲେ ଯେ ଆଉ ରାଜ-କାର୍ଯ୍ୟରେ ଲିପ୍ତ ରହିବା ତାଙ୍କ ପକ୍ଷରେ ଉଚିତ ନୁହେଁ । ଅନ୍ୟ କେହି ରାଜ୍ୟଭାର ଗ୍ରହଣ କଲେ ସେ ନିଶ୍ଚିନ୍ତରେ ଶେଷ ଜୀବନ ଅତିବାହିତ କରନ୍ତେ ।

କିନ୍ତୁ ଲିଅର୍‌ଙ୍କର ପୁତ୍ର ସନ୍ତାନ ନ ଥିଲେ । କେବଳ ତିନୋଟି କନ୍ୟା ଥିଲେ । ସେ ମନେ ମନେ ସ୍ଥିର କଲେ ସମଗ୍ର ରାଜ୍ୟକୁ ତିନି ଭାଗରେ ବିଭକ୍ତ କରି କନ୍ୟାମାନଙ୍କ ମଧ୍ୟରେ ବଣ୍ଟନ କରିଦେବେ । ତାହା ହେଲେ କାହାରି ମନରେ ଅସନ୍ତୋଷ ରହିବ ନାହିଁ ।

ଲିଅର୍‌ଙ୍କ କନ୍ୟାମାନଙ୍କର ନାମ ଥିଲା ଗନେରିଲ୍, ରିଗାନ୍ ଓ କର୍ଡେଲିଆ । ଗନେରିଲ୍‌ର ଆଲ୍‌ବାନିର ଡିଉକ୍‌ଙ୍କସହିତ ଓ ରିଗାନର କର୍ଣ୍ଣୱାଲ୍‌ର ଡିଉକ୍‌ଙ୍କ ସହିତ ବିବାହ ହୋଇ ଯାଇଥିଲା । ସାନଝିଅ କର୍ଡେଲିଆର ବିବାହ ହୋଇ ନଥିଲା । ଏହି ସାନଝିଅକୁ ରାଜା ସବୁଠାରୁ ବେଶି ସ୍ନେହ କରୁଥିଲେ । କର୍ଡେଲିଆ ଯେପରି ସୁନ୍ଦରୀ ସେହିପରି ଗୁଣବତୀ । ତେଣୁ ତାଙ୍କୁ ବିବାହ କରିବାକୁ ଅନେକ ରାଜା ଓ ରାଜପୁତ୍ର ଇଚ୍ଛାକରୁଥିଲେ । ଫ୍ରାନ୍‌ସର ରାଜା ଓ ବର୍ଗଣ୍ଡିର ଡିଉକ୍ କର୍ଡେଲିଆକୁ ବିବାହ କରିବା ଉଦ୍ଦେଶ୍ୟ ରଖି ଲିଅରଙ୍କର ଅତିଥି

ହୋଇଥିଲେ । ଲିଅର ମଧ୍ୟ ଏ ଦୁହିଁଙ୍କ ମଧ୍ୟରୁ ଜଣକ ସହିତ କର୍ଡେଲିଆର ବିବାହ ଦେବାକୁ ଇଚ୍ଛୁକ ଥିଲେ । ଲିଅରଙ୍କର ଧାରଣା ଥିଲା ଯେ ରାଜ୍ୟକୁ ଝିଅମାନଙ୍କ ମଧ୍ୟରେ ବାଣ୍ଟିଦେଲେ ସେମାନେ ନିଜ ନିଜ ସ୍ୱାମୀଙ୍କ ପରାମର୍ଶ ଅନୁସାରେ ସୁନ୍ଦରରୂପେ ରାଜ୍ୟଶାସନ କରିବେ ଓ ପ୍ରଜାମାନେ ସୁଖରେ ରହିବେ ।

ଲିଅର୍ ନିଜ ମନ କଥା ଝିଅମାନଙ୍କ ଆଗରେ ପ୍ରକାଶ କରି ନ ଥିଲେ; ମାତ୍ର କେଉଁ ଝିଅକୁ ରାଜ୍ୟର କେଉଁ ଅଂଶ ଦେବେ ତାହା ସ୍ଥିର କରି ରଖିଥିଲେ । ଦିନେ ସେ ତିନି ଝିଅଙ୍କୁ ଡାକି କହିଲେ, "ତୁମ୍ଭେମାନେ ମୋତେ କିଏ କିପରି ଭଲ ପାଅ, ମୁଁ ତାହା ଜାଣିବାକୁ ଚାହେଁ ।" ଏହା ଶୁଣିଲାମାତ୍ରେ ବଡ଼ ଝିଅ ଗନେରିଲ୍ କହିଲା, "ବାପା, ମୁଁ ଯେ ତୁମକୁ କେତେ ଭଲ ପାଏ, ତାହା କହିବାକୁ ମୋର ଶକ୍ତି ନାହିଁ । ମୋର ତୁମ ପ୍ରତି ଏତେ ସ୍ନେହ ଯେ ତାହା କଥାରେ ପ୍ରକାଶ କରି ହେବ ନାହିଁ । ଲୋକେ କହନ୍ତି ଚକ୍ଷୁଠାରୁ ବଡ଼ ସମ୍ପଦ ନାହିଁ । କିନ୍ତୁ ମୁଁ ତୁମକୁ ନିଜର ଚକ୍ଷୁଠାରୁ ବଡ଼ ମନେ କରେ । ପୁଣି ପ୍ରତ୍ୟେକ ଲୋକ ନିଜର ଜୀବନକୁ ଆଦର କରେ; ମାତ୍ର ତୁମେ ମୋର ଜୀବନଠାରୁ ଅଧିକ । ମୋ ମତରେ ମୁଁ ତୁମକୁ ଯେପରି ଭଲ ପାଏ, କେହି ପୃଥିବୀରେ ତା'ର ବାପାଙ୍କୁ ସେପରି ଭଲ ପାଉ ନ ଥିବ ।"

ବୋଧହୁଏ ବୃଦ୍ଧାବସ୍ଥା ହେତୁ ଲିଅରଙ୍କର ବୁଦ୍ଧି ଓ ବିଚାର ଶକ୍ତି ଊଣା ହୋଇ ଆସିଥିଲା । ଗନେରିଲ୍ ଯାହା କହିଲା, ତାହା ପେଟ ଭିତରୁ କହୁଥିଲା କି କେବଳ, ତାଙ୍କ ମନ ଭୁଲାଇବାକୁ କହୁଥିଲା, ତାହା ସେ ବୁଝି ପାରିଲେ ନାହିଁ । ଲିଅର୍ ଗନେରିଲ୍‌ର କଥା ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ସେ ରାଜ୍ୟର ଗୋଟିଏ ମାନଚିତ୍ର ଆଣି ସେଥିରେ ଗୋଟିଏ ଅଂଶରେ ଗାର ପକାଇ କହିଲେ,

"ଇଂଲଣ୍ଡର ଏହି ଅଂଶଟି ମୁଁ ତୋତେ ଅର୍ପଣ କଲି । ତୁ ଓ ତୋର ସ୍ୱାମୀ ଏହି ଅଂଶ ଶାସନ କରି ସୁଖରେ ରହିବ ।"

ତତ୍ପରେ ସେ ରଗାନ୍‌କୁ କହିଲେ, "ଏବେ ତୁ ମୋତେ କିପରି ଭଲ ପାଉ କହ ।" ରେଗାନ୍ ବଡ଼ ଭଉଣୀ ଯେପରି କହିଥିଲା ସେହିପରି କହିଲା । ସେ ଆହୁରି ମଧ୍ୟ କହିଲା, "ମୋ ବଡ଼ ଭଉଣୀ ଯାହା କହିଲେ, ମୋର ସ୍ନେହ ତହିଁରୁ ଅଧିକ । ତୁମର ସେବା ଶୁଶ୍ରୂଷାରେ ଜୀବନ କଟାଇ ପାରିଲେ ମୁଁ ସୁଖୀ ହେବି ।"

ଲିଅର୍ ଆନନ୍ଦିତ ହୋଇ ମାନଚିତ୍ର ଦେଖାଇ ଆଉ ଗୋଟିଏ ଅଂଶ ତାହାକୁ ପ୍ରଦାନ କଲେ । ତତ୍ପରେ ସେ ସାନଝିଅ କର୍ଡ଼େଲିଆକୁ ସେହି ପ୍ରଶ୍ନ ପଚାରିଲେ ।

ଅନ୍ୟ ଦୁଇ ଭଉଣୀ ଯେତେବେଳେ ବାପାଙ୍କ ପ୍ରତି ସେମାନଙ୍କର ସ୍ନେହ-ବିଷୟ କହୁଥିଲେ ସେତେବେଳେ କର୍ଡ଼େଲିଆ ନୀରବରେ ସେମାନଙ୍କ କଥା ଶୁଣୁଥିଲା । ସେ ଜାଣିପାରିଥିଲା ଯେ ତାର ଭଉଣୀ ଦୁହେଁ ଯାହା କହୁଥିଲେ ତାହା ମିଥ୍ୟା । ବୃଦ୍ଧ ପିତାଙ୍କୁ ପ୍ରଶଂସା କରି ତାଙ୍କଠାରୁ ରାଜ୍ୟର କେତେକ ଅଂଶ ପାଇବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ପ୍ରକୃତ ପକ୍ଷରେ କର୍ଡ଼େଲିଆ ଲିଅରଙ୍କୁ ସବୁଠାରୁ ବେଶି ଭଲ ପାଉଥିଲା । ତେଣୁ ଭଉଣୀମାନଙ୍କ ମିଥ୍ୟା କଥା ଶୁଣି ସେ ମନେ ମନେ ବିରକ୍ତ ହୋଇଥିଲା । ବାପାଙ୍କର ପ୍ରଶ୍ନ ଶୁଣି ସେ ଧୀର ସ୍ୱରରେ କହିଲା, "ତୁମେ ମୋର ପିତା, ପିତାଙ୍କୁ ଯେପରି ସ୍ନେହ କରିବା ଉଚିତ, ମୁଁ ସେପରି କରେ । ତହିଁରୁ ଅଧିକ କରେ ବୋଲି ମୁଁ କହି ପାରିବି ନାହିଁ ।"

ଆଦରର ଝିଅ କର୍ଡେଲିଆ ମୁହଁରୁ ଏହା ଶୁଣିଲାକ୍ଷଣି ଲିଅର୍ ଚମକି ପଡ଼ିଲେ । ସେ ଆଶା କରିଥିଲେ ଯେ କର୍ଡ଼େଲିଆ ତାର ଭଉଣୀ ଦୁହିଁଙ୍କଠାରୁ ଅଧିକ ପରିମାଣରେ ତାଙ୍କୁ ଭଲପାଏ ବୋଲି

କହିବ । ମାତ୍ର ସେ ସେପରି ନ କହିବାରୁ ଲିଅର୍ ବିସ୍ମିତ ହୋଇ କହିଲେ, "କର୍ଡେଲିଆ, ତୋଠାରୁ ମୁଁ ଏପରି କଥା ଆଶା କରି ନ ଥିଲି । ତୋତେ ଆଉ ଥରେ ସୁବିଧା ଦେଉଛି । ତୁ ମୋତେ କେତେ ଭଲ ପାଉ, ତାହା କହ । ନ ହେଲେ ହୁଏତ ତୋତେ ରାଜ୍ୟର ଅଂଶ ହରାଇବାକୁ ପଡ଼ିବ ।"

କର୍ଡ଼େଲିଆ ଧୀର ସ୍ୱରରେ ଉତ୍ତର କଲା, "ତୁମେ ମୋର ପିତା; ତୁମେ ମୋତେ ପିଲାଟି ଦିନୁ ପାଳି ଆସିଛ, ମୋ ଉପରେ ତୁମର ସ୍ନେହ ଅଜାଡ଼ି ଦେଇଛ । ମୁଁ ମଧ୍ୟ ତୁମର ଆଦେଶ ମାନି ଆସିଛି, ତୁମକୁ ସ୍ନେହ କରିଛି, ଭକ୍ତି କରିଛି । କିନ୍ତୁ ତୁମ ଛଡ଼ା ଆଉ କାହାକୁ ଭଲ ପାଏ ନାହିଁ, କି ପାଇବି ନାହିଁ ଏପରି ମିଥ୍ୟା କଥା ମୁଁ କହି ପାରିବି ନାହିଁ । ଯଦି ମୁଁ ବିବାହ କରେ ତେବେ ମୋର ସ୍ୱାମୀଙ୍କୁ ନିଶ୍ଚୟ ଭଲ ପାଇବି, ତାଙ୍କର ସେବା ଶୁଶ୍ରୂଷା କରିବି । ତେବେ କିପରି ମିଥ୍ୟା କଥା କହିବି ?"

ଲିଅରଙ୍କର ବିସ୍ମୟ ଆହୁରି ବୃଦ୍ଧି ପାଇଲା । ସେ ଆଜି ପର୍ଯ୍ୟନ୍ତ ମନେ କରିଥିଲେ ଯେ କର୍ଡେଲିଆ ତାଙ୍କୁ ସବୁଠାରୁ ବେଶି ଭଲପାଏ । ସେ ଯେ ତାଙ୍କ ପ୍ରତି କର୍ତ୍ତବ୍ୟ ମାନି କରିଥାଏ, ଏହା ଶୁଣିବେ ବୋଲି ସେ ଆଶା କରି ନ ଥିଲେ । ସେ ନିତାନ୍ତ କ୍ରୁଦ୍ଧ ହୋଇ କହିଲେ, "ତୁ ଯଦି ସତ୍ୟ କହୁଛୁ ଯେ ମୋତେ କର୍ତ୍ତବ୍ୟ ଅନୁରୋଧରେ ଭଲ ପାଉ, ତହିଁରୁ ଅଧିକ ନୁହେଁ, ତେବେ ତୁ ତୋର ସତ୍ୟକୁ ନେଇ ଯେଉଁ-ଆଡ଼େ ଇଚ୍ଛା ଯାଇ ପାରୁ । ତୋର ବିବାହ ନିମନ୍ତେ ମୁଁ କିଛି ମାତ୍ର ଯୌତୁକ ଦେବି ନାହିଁ ।"

ଅନ୍ୟ ଦୁଇ ଭଉଣୀ ଲିଅରଙ୍କ କଥା ଶୁଣି ମନେ ମନେ ଆନନ୍ଦିତ ହେଉଥାନ୍ତି । ଲିଅର୍ ସେ ଦୁହିଁଙ୍କୁ ଅନାଇଁ କହିଲେ, "କର୍ଡ଼େଲିଆ ପାଇଁ ମୁଁ ରାଜ୍ୟର ଗୋଟିଏ ଅଂଶ ରଖିଥିଲି । ମାତ୍ର

ସେ ଏପରି କୃତଘ୍ନ ଯେ ତାକୁ କିଛି ମାତ୍ର ଦେବା ମୁଁ ଉଚିତ ମନେ କରୁନାହିଁ । ତେଣୁ ସେ ଅଂଶଟିକୁ ମଧ୍ୟ ତୁମ ଦୁହିଁଙ୍କ ମଧ୍ୟରେ ସମାନ ଭାବରେ ବଣ୍ଟନ କରି ଦେଉଛି ।" ତତ୍ପରେ ସେ କର୍ଡ଼େଲିଆକୁ ଲକ୍ଷ୍ୟ କରି କହିଲେ, "ଆଜିଠାରୁ ତୁ ମୋର କନ୍ୟା ନୋହୁ । ମୁଁ ତୋତେ ଚିରଦିନ ପାଇଁ ତ୍ୟାଗ କଲି ।"

ରଜା ଲିଅରଙ୍କର ପାରିଷଦମାନଙ୍କ ମଧ୍ୟରେ ଜଣେ ଉତ୍ତମ ଓ ବିଶ୍ୱାସୀ ଲୋକ ଥିଲେ—ସେ କେଣ୍ଟ୍‌ର ଜମିଦାର । ସେ ଦେଖିଲେ ଯେ ରଜା କର୍ଡେଲିଆ ପ୍ରତି ଅନ୍ୟାୟ କରୁଅଛନ୍ତି । ରଜାଙ୍କର ମନ ବଦଳାଇବା ପାଇଁ ସେ କର୍ଡେଲିଆ ସପକ୍ଷରେ କିଛି କହିବାକୁ ଯାଉଥିଲେ; କିନ୍ତୁ ରଜା ତାଙ୍କ କଥା ନ ଶୁଣି କ୍ରୋଧ ପ୍ରକାଶ କରି ତାଙ୍କୁ ମଧ୍ୟ ଅପମାନ ଦେଲେ । ଉଭୟଙ୍କ ମଧ୍ୟରେ ଅନେକ ବାଦାନୁବାଦ ହେଲା । ଶେଷରେ ରଜା ବିରକ୍ତ ହୋଇ ତାଙ୍କୁ ରାଜ୍ୟରୁ ନିର୍ବାସନ କଲେ । କେଣ୍ଟର ଜମିଦାର ଯିବା ବେଳେ କହିଲେ, "ମହାରାଜ, ମୁଁ ସର୍ବଦା ଆପଣଙ୍କର ସେବା କରି ଆସିଅଛି । ଆପଣଙ୍କର ମଙ୍ଗଳ ହିଁ ମୋର କାମନା । ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ କରି ମୁଁ ରାଜ୍ୟ ତ୍ୟାଗ କରି ଯାଉଅଛି । ବର୍ତ୍ତମାନ ମଧ୍ୟ ମୁଁ କହୁଛି ଯେ କର୍ଡ଼େଲିଆ ନିର୍ଦ୍ଦୋଷ । ଭଗବାନଙ୍କ ଛଡ଼ା ତାର ଅନ୍ୟ କେହି ସହାୟ ନାହିଁ । ଭଗବାନ ତାକୁ ରକ୍ଷା କରନ୍ତୁ ।"

ରଜା ଲିଅର୍ ଫ୍ରାନ୍ସର ରଜା ଓ ବର୍ଗଣ୍ଡିର ଡ୍ୟୁକଙ୍କୁ ଡାକି କହିଲେ, "ଆପଣମାନେ ଉଭୟେ କର୍ଡ଼େଲିଆକୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ବର୍ତ୍ତମାନ କର୍ଡ଼େଲିଆ ମୋର ଅଭିଶାପର ପାତ୍ର । ମୋର ସମଗ୍ର ରାଜ୍ୟ ମୋର ଅନ୍ୟ ଦୁଇ କନ୍ୟାଙ୍କ ମଧ୍ୟରେ ବଣ୍ଟନ କରି ଦେଇଅଛି । ତାର ବିବାହ ଉପଲକ୍ଷ୍ୟରେ ମୁଁ କପର୍ଦ୍ଦକ ମାତ୍ର ଯୌତୁକ ଦେବି ନାହିଁ । ଏପରି ଅବସ୍ଥାରେ ଆପଣମାନେ

ତାଙ୍କୁ ବିବାହ କରିବାକୁ ଇଚ୍ଛୁକ କି ନା ତାହା ବିଚାର କରି କହନ୍ତୁ ।"

ଏହାଶୁଣି ବର୍ଗଣ୍ଡିର ଡିଉକ୍ ଲିଅର୍‌ଙ୍କୁ ଅନୁରୋଧ କରି କହିଲେ, "କର୍ଡ଼େଲିଆ ଆପଣଙ୍କର କନ୍ୟା । ତାଙ୍କୁ ତାର ଅଂଶ ଦେବା ଆପଣଙ୍କ ପକ୍ଷରେ ଉଚିତ । ତାର ସାମାନ୍ୟ ଅପରାଧ କ୍ଷମା କରନ୍ତୁ ।" କିନ୍ତୁ ଲିଅର୍ ଏଥିରେ ବିଚଳିତ ନ ହୋଇ କହିଲେ; "ମୁଁ ଯାହା ସ୍ଥିର କରିସାରିଛି, ସେଥିର ଅନ୍ୟଥା ହୋଇ ନ ପାରେ । ଆପଣ ଇଚ୍ଛାକଲେ ତାଙ୍କୁ ବିବାହ କରିପାରନ୍ତି, ମାତ୍ର ମୋଠାରୁ କିଛିମାତ୍ର ଯୌତୁକ ଆଶା କରିବେ ନାହିଁ ।" ଏହା ଶୁଣି ବର୍ଗଣ୍ଡିର ଡିଉକ୍ ଜଣାଇ ଦେଲେ ଯେ ସେ କର୍ଡ଼େଲିଆଙ୍କୁ ବିବାହ କରି ପାରିବେ ନାହିଁ ।

କର୍ଡ଼େଲିଆ କହିଲେ, "ଭଗବାନ୍ ବର୍ଗଣ୍ଡିର ଡିଉକ୍‌ଙ୍କୁ ସୁଖ ଶାନ୍ତିରେ ରଖନ୍ତୁ । ସେ ମୋତେ ବିବାହ କରିବାକୁ ଇଚ୍ଛାକରି ନ ଥିଲେ; ମୋର ଧନସମ୍ପତ୍ତିକୁ ବିବାହ ହେବାକୁ ଚାହିଁଥିଲେ । ଯେଉଁ ସେ ମୋତେ ବିବାହ କରିବାକୁ ଅନିଚ୍ଛା ପ୍ରକାଶ କରିଅଛନ୍ତି ଏହା ମୋର ମଙ୍ଗଳପାଇଁ । ମୁଁ କଦାପି ତାଙ୍କର ପତ୍ନୀ ହୋଇ ନ ପାରେ ।"

ଫ୍ରାନ୍‌ସର ରାଜା କହିଲେ, "କର୍ଡ଼େଲିଆ, ତୁମେ ପୈତୃକ ସମ୍ପଦରୁ ବଞ୍ଚିତ, ତେଣୁ ଦରିଦ୍ର । କିନ୍ତୁ ମୋ ମତରେ ତୁମେ ସମ୍ପଦଶାଳିନୀ । ତୁମର ସମ୍ପଦ ହେଉଛି ତୁମର ରୂପ; ତୁମର ଗୁଣଲାଗି ତୁମକୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିଥିଲି, ତୁମର ଧନ ଲାଗି ନୁହେଁ ।"

ତତ୍ପରେ ସେ ରାଜା ଲିଅରଙ୍କୁ କହିଲେ, "ମହାରାଜ, ଆପଣଙ୍କର ଏହି ଧନହୀନା କନ୍ୟାକୁ ମୁଁ ବିବାହ କରିବାକୁ ପ୍ରସ୍ତୁତ । ସେ ଫ୍ରାନ୍‌ସର ରାଣୀ ହେବେ ।"

ଲିଅର୍ ଉତ୍ତର କଲେ, "ମୁଁ ତ ତାକୁ କନ୍ୟା ବୋଲି ସ୍ୱୀକାର କରୁନାହିଁ । ତେଣୁ ତୁମେ ତାକୁ ବିବାହ କରିବାରେ ମୋର ଆପତ୍ତି କରିବାର କିଛି କାରଣ ନାହିଁ । ସେ ସ୍ୱଚ୍ଛନ୍ଦରେ ତୁମ ସଙ୍ଗେ ଯାଇପାରେ । ମାତ୍ର ମନେ ରଖିଥାଅ, ମୋର ତା ପ୍ରତି ଆଦୌ ସ୍ନେହ ନାହିଁ । ଏପରିକି ମୁଁ ତାକୁ ମୋର ଆଶୀର୍ବାଦ ମଧ୍ୟ ଦେଇପାରିବି ନାହିଁ ।"

କର୍ଡେଲିଆ ତାର ଦୁଇ ଭଉଣୀଙ୍କଠାରୁ ବିଦାୟ ନେଇଯିବା ବେଳେ କହିଲା; "ପିତା ବୃଦ୍ଧ, ଅସମର୍ଥ । ତାଙ୍କର ଯତ୍ନ ନେଉଥିବ ।" କିନ୍ତୁ ସେ ଦୁହେଁ ବିରକ୍ତି ପ୍ରକାଶ କରି କହିଲେ, "ତୁ ଯାଆ, ତୋ ସ୍ୱାମୀର ଯତ୍ନନେବୁ । ଆମର କର୍ତ୍ତବ୍ୟ କଅଣ, ଆମେ ଜାଣୁ । ତୋଠାରୁ ସେକଥା ଶିଖିବା ଆମର ଦରକାର ନାହିଁ ।"

କର୍ଡେଲିଆ ଏହିପରି ପିତା ଓ ଭଉଣୀମାନଙ୍କଠାରୁ ବିଦାୟ-ନେଇ ଫ୍ରାନ୍ସର ରାଜାଙ୍କ ସହିତ ଚାଲିଗଲା । ମାତ୍ର ତା ମନରେ ଆଶଙ୍କା ହେଉଥାଏ ଯେ ତାର ଭଉଣୀ ଦୁହେଁ ପିତାଙ୍କର ଉପଯୁକ୍ତ ଯତ୍ନ ନେବେନାହିଁ । ବୃଦ୍ଧ ବୟସରେ ସେ ହୁଏତ ଦୁଃଖ କଷ୍ଟ ଭୋଗ କରିବେ ।

ଲିଅର୍ ଦୁଇ କନ୍ୟାଙ୍କ ମଧ୍ୟରେ ରାଜ୍ୟ ବଣ୍ଟନ କରିଦେଇ ବ୍ୟବସ୍ଥା କରିଥିଲେ ଯେ ସେ ରାଜ୍ୟଭାର ତ୍ୟାଗ କଲେହେଁ ନାମମାତ୍ର ରାଜା ହୋଇ ରହିବେ । ରାଜସମ୍ମାନର ଚିହ୍ନସ୍ୱରୂପ ତାଙ୍କର ଶହେଜଣ ଅନୁଚର ତାଙ୍କ ସଙ୍ଗରେ ରହିବେ । ପ୍ରତ୍ୟେକ ଝିଅର ପ୍ରାସାଦରେ ସେ ଓ ତାଙ୍କର ଅନୁଚରମାନେ ମାସେ ଲେଖାଏଁ ବାରିଶ୍ରଷ୍ଟ ଅତିଥିରୂପେ ବାସ କରିବେ । ସେ ପ୍ରଥମେ ଗନେରିଲ୍ ଓ ତାର ସ୍ୱାମୀ ଆଲ୍‌ବାନିର ଡିଉକଙ୍କ ଆତିଥ୍ୟ ଗ୍ରହଣ କରିବାକୁ ଗଲେ । କେବଳ ଗନେରିଲ୍ ସେ ପିତାଙ୍କର ଅଭାବ ଅସୁବିଧା ପ୍ରତି ଦୃଷ୍ଟି ଦେଉନଥିଲା,

ତାହା ନୁହେଁ, ତାର ଭୃତ୍ୟମାନେ ମଧ୍ୟ ଲିଅର୍‌ଙ୍କୁ ଅବଜ୍ଞା କରୁଥିଲେ । ଲିଅର୍ ଏହା ଲକ୍ଷ୍ୟ କଲେ; କିନ୍ତୁ ସେ କିଛି ପ୍ରତିକାର କରିପାରିଲେ ନାହିଁ । ସେମାନେ ଲିଅରଙ୍କର ଭୃତ୍ୟ ନୁହନ୍ତି, ଗନେରିଲ୍‌ର । ଏବେ ଲିଅର୍ ଜଣେ ଅତିଥି ମାତ୍ର । ଲିଅର ଗନେରିଲ କହିଲେ ଯେ ତାର ଚାକରମାନେ ତାଙ୍କ କଥା ଶୁଣୁନାହାନ୍ତି । ଗନେରିଲ୍ କହିଲା, "ବାପା, ତୁମେ ମୋ ଚାକରମାନଙ୍କୁ ବୃଥା ଦୋଷାରୋପ କରୁଛ । ତୁମର କଅଣ ବା ଦରକାର ଅଛି ଯେ ତୁମେ ସାଥିରେ ଏତେ ଗୁଡ଼ାଏ ଲୋକ ଆଣିଛ ? ସେଗୁଡ଼ାକ ମନେ କରୁଛନ୍ତି ଯେ ଏ ପ୍ରାସାଦଟା ସେମାନଙ୍କର । ଏତେଗୁଡ଼ାଏ ଲୋକ ଆଣି ଆସିବା କି ଦରକାର ଥିଲା ?"

ଚାକରମାନେ ଯେ ଲିଅର୍‌ଙ୍କ ପ୍ରତି ଆଦୌ ସମ୍ମାନ ପ୍ରଦର୍ଶନ କରୁ ନଥିଲେ ତାହାର ପ୍ରଧାନ କାରଣ ଏହି ଯେ ଗନେରିଲ୍ ସେମାନଙ୍କୁ ସେପରି କରିବାକୁ ଉପଦେଶ ଦେଇଥିଲା । ଲିଅର କିଛି କହିଲେ ସେମାନେ ନ ଶୁଣିଲାପରି ଚାଲିଯାଉଥିଲେ । ଯେତେବେଳେ ଲିଅରଙ୍କର ଏପରି ଅବସ୍ଥା, ସେତେବେଳେ ତାଙ୍କ ଅନୁଚରମାନଙ୍କ କଥା ପଚାରେ କିଏ ?

ରାଜା ଲିଅର୍ ପ୍ରଥମେ ଭାବୁଥିଲେ ଯେ ଗନେରିଲ୍‌ର ଅଜ୍ଞାତସାରରେ ତାର ଚାକରମାନେ ଏପରି କରୁଅଛନ୍ତି । କିନ୍ତୁ ଅଳ୍ପକାଳ ମଧ୍ୟରେ ତାଙ୍କର ଏହି ଧାରଣା ପରିବର୍ତ୍ତିତ ହୋଇଗଲା । ସେ ବୁଝିପାରିଲେ ଯେ ଗନେରିଲ୍ ତାଙ୍କୁ ଉପଯୁକ୍ତ ଆଦର ଗୌରବ କରିବାକୁ ପ୍ରସ୍ତୁତ ନୁହେଁ ।

ଲିଅରଙ୍କ ସହିତ ତାଙ୍କର ବିଦୂଷକ ଥିଲେ । ତାଙ୍କର ପ୍ରଧାନ କାର୍ଯ୍ୟ ହେଉଛି ହାସ୍ୟ କୌତୁକଦ୍ୱାରା ରାଜାଙ୍କ ମନ ପ୍ରଫୁଲ୍ଲ ରଖିବା । ସେ ଲିଅର୍‌ଙ୍କର ଅତି ପ୍ରିୟ ଥିଲେ । ଏବେ ତାଙ୍କର ହାସ୍ୟ କୌତୁକ

କୁଆଡ଼େ ଉଡ଼ିଗଲା । ଲିଅର୍ ମନେକଲେ ଯେ ଜଗତର ସମସ୍ତେ ତାଙ୍କ ବିରୁଦ୍ଧରେ ରହିଛନ୍ତି ।

ଏହି ଦୁର୍ଦ୍ଦିନରେ ଲିଅରଙ୍କୁ ସାହାଯ୍ୟ କରି ସାନ୍ତ୍ୱନା ଦେବାକୁ ଜଣେମାତ୍ର ଲୋକ ଥିଲା । କେଣ୍ଟ୍‌ର ଜମିଦାରଙ୍କୁ ଲିଅର୍ ରାଜ୍ୟରୁ ତଡ଼ି ଦେଇଥିଲେ । ମାତ୍ର ସେ ରାଜ୍ୟରୁ ପଳାଇ ନ ଯାଇ ଜଣେ ଦରିଦ୍ର ବ୍ୟକ୍ତିର ବେଶରେ ଆସି ଲିଅରଙ୍କର ଭୃତ୍ୟତ୍ୱ ସ୍ୱୀକାର କରିଥିଲେ । ସେ ନିଜର ଆକାର ଓ ବେଶଭୂଷାକୁ ଏପରି ବଦଳାଇ ଦେଇଥିଲେ ଯେ କେବଳ ଲିଅର୍ କାହିଁକି, ଅନ୍ୟ କେହି ମଧ୍ୟ ତାଙ୍କୁ ଚିହ୍ନି ପାରି ନଥିଲେ । ସେ ନିଜର ନାମ କାୟୁସ୍ ବୋଲି କହିଥିଲେ ।

ଭୃତ୍ୟବେଶୀ ଏହି ଜମିଦାର ବାସ୍ତବରେ ଲିଅରଙ୍କର ସେବାରେ ନିଜର ଜୀବନ ଉତ୍ସର୍ଗ କରିଦେଇଥିଲେ ।

ଦିନେ ଗନେରିଲ୍‌ର ଜଣେ ଚାକର ବୃଦ୍ଧ ରାଜା ଲିଅରଙ୍କ ପ୍ରତି ନିତାନ୍ତ ଦୁର୍ବ୍ୟବହାର ଦେଖାଇବାରୁ ସେ ହଠାତ୍ ରାଗିଯାଇ ତାକୁ ପ୍ରହାର କଲେ । ଗନେରିଲ୍ ଏଥିଲାଗି ପିତାଙ୍କ ପ୍ରତି କ୍ରୋଧ ପ୍ରକାଶ କଲା । ତାର ଚାକରମାନେ ଲିଅର୍‌ଙ୍କର ନିନ୍ଦା କଲେ । ସମସ୍ତେ ଲିଅର୍‌ଙ୍କର ବିରୋଧୀ ହେଲେ ହେଁ କେବଳ କାୟୁସ୍ ରାଜାଙ୍କର ପକ୍ଷ ସମର୍ଥନ କରିଥିଲେ ଓ ସେହି ଚାକରକୁ ଭର୍ତ୍ସନାପୂର୍ବକ ପ୍ରହାର କରିଥିଲେ ।

ଦିନକୁ ଦିନ ଗନେରିଲ୍‌ର ବ୍ୟବହାର ଲିଅରଙ୍କ ପକ୍ଷରେ ଅସହ୍ୟ ହେଲା । ସେ ମନେ କରିଥିଲା ଯେ ଏହିପରି ଦୁର୍ବ୍ୟବହାର କଲେ ଲିଅର୍ ତାର ପ୍ରାସାଦ ତ୍ୟାଗକରି ଚାଲିଯିବେ । ତାକୁ ଲିଅରଙ୍କ ପାଇଁ ଏବଂ ତାଙ୍କର ଶହେଜଣ ଅନୁଚରଙ୍କ ପାଇଁ ଆଉ ଖର୍ଚ୍ଚାନ୍ତ ହେବାକୁ ପଡ଼ିବନାହିଁ । ଶେଷରେ ତାହାହିଁ ହେଲା । ଲିଅର ଦିନେ ନିତାନ୍ତ ବିରକ୍ତ ହୋଇ କହିଲେ, "ଗନେରିଲ୍, ତୁ ମୋର

ଝିଅ ପରି ! ତୁ ମୋତେ ଏତେ ସ୍ନେହ କରୁ ବୋଲି କହୁଥିଲୁ; ମାତ୍ର ତୋର ମୋ ପ୍ରତି ବ୍ୟବହାର କି ହୀନ ? ହେଉ, ମୁଁ ଆଉ ତୋତେ ଅସୁବିଧାରେ ପକାଇବାକୁ ଚାହେଁନାହିଁ । ମୁଁ ଯାଉଛି । ମୋର ଆଉ ଗୋଟିଏ ଝିଅ ଅଛି । ମୋର ଦୃଢ଼ବିଶ୍ୱାସ, ସେ ମୋପ୍ରତି ଭଲ ବ୍ୟବହାର ଦେଖାଇବ ।"

ରଜା ଲିଅର୍ ଗନେରିଲ୍‌ର ପ୍ରାସାଦ ତ୍ୟାଗକରି ବାହାରିବା-ବେଳେ ତାର ସ୍ୱାମୀ ଆସି କହିଲେ, "ଆପଣ ଚାଲିଯାଉଛନ୍ତି କାହିଁକି ? ଆପଣଙ୍କର କଅଣ ଅସୁବିଧା ହେଲା, ମୁଁ ଜାଣେନାହିଁ । ମୋତେ ବିଶ୍ୱାସ କରନ୍ତୁ; ମୁଁ ଆପଣଙ୍କ ନିକଟରେ ଅପରାଧ କରିନାହିଁ । ଆପଣଙ୍କର କ୍ରୋଧର କାରଣ ମୋତେ ସମ୍ପୂର୍ଣ୍ଣ ଅଜ୍ଞାତ ।" ଲିଅର ଆହୁରି କ୍ରୁଦ୍ଧ ହୋଇ କହିଲେ, "ଯେଉଁଠାରେ ମୋର ଝିଅ ମୋପ୍ରତି ଏପରି ଦୁର୍ବ୍ୟବହାର କରିପାରେ, ସେଠାରେ ଆଉ ମୁହୂର୍ତ୍ତେ ସୁଦ୍ଧା ରହିବା ମୋର ଇଚ୍ଛା ନୁହେଁ ।" ଗନେରିଲ୍‌କୁ ଲକ୍ଷ୍ୟ କରି ସେ କହିଲେ, "ମୁଁ ଜାଣିନଥିଲି ଯେ ତୁ ଏପରି ପ୍ରତାରଣା କରିବୁ । କୃତଘ୍ନ ସନ୍ତାନର ପିତା ହେବା ମୋ ପକ୍ଷରେ ଏକ ଅଭିଶାପ । ମୁଁ ଆଉ ତୋର ମୁଖ ଦର୍ଶନ କରିବାକୁ ଚାହେଁନାହିଁ । ମୁଁ ଯାଉଛି ।"

ଲିଅର୍ ରିଗାନ୍‌ର ଗୃହକୁ ଯିବାପାଇଁ ତାଙ୍କର ଅନୁଚରମାନଙ୍କୁ ଖୋଜିଲେ; ମାତ୍ର ସେତେବେଳକୁ ଶହେଜଣ ମଧ୍ୟରୁ ପଚାଶ ଜଣ ମାତ୍ର ଥିଲେ । ଅବଶିଷ୍ଟ ପଚାଶ ଜଣଙ୍କୁ ଗନେରିଲ୍ ଏଥିପୂର୍ବରୁ ବାହାର କରି ଦେଇଥିଲେ । ଅଗତ୍ୟା ଏହି ପଚାଶ ଜଣଙ୍କୁ ସଙ୍ଗରେ ଘେନି ଲିଅର୍ ରିଗାନ୍‌ର ପ୍ରାସାଦ ଅଭିମୁଖରେ ବାହାରିଲେ । କାଏସ୍ ଓ ବିଦୂଷକ ମଧ୍ୟ ସେମାନଙ୍କ ସଙ୍ଗରେ ଚାଲିଲେ ।

ଲିଅର୍ ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ ଯେ ରେଗାନ୍ ମଧ୍ୟ ତାର ବଡ଼ ଭଉଣୀ ପରି ତାଙ୍କ ପ୍ରତି ଅନାଦର ପ୍ରକାଶ କରିବ । ସେ ତାହା ପାଖକୁ ଯିବା ପୂର୍ବରୁ କାଏସ୍ ହାତରେ ରେଗାନ୍ ନିକଟକୁ ଖଣ୍ଡିଏ ପତ୍ର ପଠାଇଦେଲେ । ସେଥିରେ ସେ ଶୀଘ୍ର ଅନୁଚରମାନଙ୍କ ସହିତ ତାର ପ୍ରାସାଦରେ ପହଞ୍ଚିବେ ବୋଲି ଜଣାଇ ଦେଇଥିଲେ ।

କାଏସ୍ ରେଗାନ୍‌ର ପ୍ରାସାଦରେ ପହଞ୍ଚି ଜାଣିପାରିଲେ ଯେ ଗନେରିଲ୍ ମଧ୍ୟ ସାନ ଭଉଣୀ ପାଖକୁ ଖଣ୍ଡିଏ ଚିଠି ପଠାଇଥିଲା । ପ୍ରାସାଦରେ ଥିଲେ ଭଦ୍ରତା ଅନୁରୋଧରେ ଲିଅର୍‌ଙ୍କୁ ସମ୍ମାନ-ସହକାରେ ରଖିବାକୁ ହେବ । ଏହି ଆଶଙ୍କାରେ ରେଗାନ୍ ତାହାର ସ୍ୱାମୀ କର୍ଣ୍ଣବାଲର ଡିଉକ୍‌ଙ୍କ ସହିତ ଗ୍ଲାସେଷ୍ଟର୍‌ର ଜମିଦାରଙ୍କ ଘରକୁ ଚାଲିଯାଇଥିଲା । ସେମାନଙ୍କର ଉଦ୍ଦେଶ୍ୟ ଥିଲା ଯେ ଲିଅର୍ ରେଗାନ ବା ତାହାର ସ୍ୱାମୀ କାହାରିକୁ ନ ଦେଖି ବାଧ୍ୟ ହୋଇ ଫେରିଯିବେ ।

କାଏସ୍ ନିରସ୍ତ ନ ହୋଇ ଗ୍ଲସେଷ୍ଟର୍‌ର ଡିଉକ୍‌ଙ୍କ ଗଡ଼କୁ ଯାଇ ସେଠାରେ ରେଗାନଙ୍କୁ ଲିଅର୍‌ଙ୍କ ପତ୍ରଟି ଦେଇ ଉତ୍ତର ଅପେକ୍ଷାରେ ରହିଲେ । ଇତ୍ୟବସରରେ ତାଙ୍କର ଜଣେ ଚାକର ସହିତ ଦେଖା-ହେଲା । ସେ ଦେଖିଲେ ଯେ ଗନେରିଲ୍‌ର ଘରେ ଯେଉଁ ଚାକରଟି ଲିଅରଙ୍କୁ ଅପମାନିତ କରିଥିବାରୁ ତାଙ୍କଠାରୁ ଭର୍ତ୍ସନା ଓ ପ୍ରହାର ପାଇଥିଲା, ଏ ସେହି । ଏଠାରେ ମଧ୍ୟ ତା ସହିତ କାଏସ୍‌ର କଳହ ହେଲା । ଏହା ଫଳରେ କର୍ଣ୍ଣବାଲର ଡିଉକ କାଏସଙ୍କୁ ବନ୍ଦୀ କରି କଠୋର ଦଣ୍ଡ ଦେଲେ । ଅବଶ୍ୟ ଏପରି କରିବା ଗ୍ଲସେଷ୍ଟର୍‌ର ଜମିଦାରଙ୍କର ଇଚ୍ଛା ନଥିଲା; କାରଣ ସେ ଲିଅର୍‌ଙ୍କୁ ଶ୍ରଦ୍ଧା କରୁଥିଲେ ଓ ତାଙ୍କର ଭୃତ୍ୟକୁ ଅପମାନିତ କରିବାକୁ ଅନୁଚିତ ମନେ କରୁଥିଲେ । କାଏସ୍‌ଙ୍କର ହାତ ଓ ଗୋଡ଼କୁ ଗୋଟିଏ କାଠ ଫର୍ମା ଭିତରେ ପୂରାଇ

କଲଣିଦ୍ୱାରା ଏପରି ବନ୍ଦ କରିଦିଆଯାଇଥିଲା ଯେ, ସେ ସେଥିରୁ ବାହାରିବାର ଉପାୟ ନ ଥିଲା । ଏଣୁ ସେ ଅବସ୍ଥାରେ ବାହାରେ ରହିବାରୁ ତାଙ୍କୁ ଖରା ବର୍ଷା ସହିବାକୁ ପଡ଼ୁଥିଲା ।

ତା ପରଦିନ ସକାଳେ ଲିଅର୍ ରେଗନର ପ୍ରାସାଦରେ ପହଞ୍ଚି ଦେଖିଲେ ଯେ ତାଙ୍କର ବିଶ୍ୱସ୍ତ ଭୃତ୍ୟ କାଏସ୍ ବନ୍ଦୀ ହୋଇ ପଡ଼ିଛି । ଏଥିରେ ତାଙ୍କ ମନରେ ବିଶେଷ ରାଗ ହେଲା । ତେଣୁ ସେ ତତ୍‌କ୍ଷଣାତ୍ ରଗାନ୍‌କୁ ଏହା ଜଣାଇବା ପାଇଁ ଗ୍ଳସେଷ୍ଟର୍‌କୁ ଗଲେ । ସେ ସେଠାରେ ପହଞ୍ଚିବାରୁ ଗ୍ଳସେଷ୍ଟର୍‌ର ଜମିଦାର ତାଙ୍କ ପାଖକୁ ଆସି କହିଲେ ଯେ ରଗାନ୍ ଓ ତାର ସ୍ୱାମୀ ତାଙ୍କ ସଙ୍ଗେ ଦେଖାକରି ପାରିବେ ନାହିଁ ବୋଲି ସମ୍ବାଦ ଦେଇଛନ୍ତି । ସେମାନେ କର୍ଣ୍ଣୱାଲଠାରୁ ଏପର୍ଯ୍ୟନ୍ତ ଆସି କ୍ଲାନ୍ତ ହୋଇପଡ଼ିଛନ୍ତି ବୋଲି କହିଲେ । ପ୍ରଥମେ ଲିଅର୍ ବିଶ୍ୱାସ କରିପାରିଲେ ନାହିଁ ଯେ ତାଙ୍କର କନ୍ୟା ତାଙ୍କୁ ଦେଖାକରି ପାରିବ ନାହିଁ ବୋଲି କହିପାରେ ! ପୁନର୍ବାର ସମ୍ବାଦ ଦେବାରୁ ରେଗାନ୍ ଓ ତାର ସ୍ୱାମୀ ଲିଅର୍‌ଙ୍କୁ ଅଭ୍ୟର୍ଥନା କଲେ । ଲିୟର୍ ତତ୍‌କ୍ଷଣାତ୍ ଗନେରିଲ୍‌ର ତାଙ୍କ ପ୍ରତି ଦୁର୍ବ୍ୟବହାର କଥା କହିବାକୁ ଲାଗିଲେ । ସେ ଆଶା କରିଥିଲେ ଯେ ରଗାନ୍ ତାଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବ ଓ ଗନେରିଲ୍‌ର କାର୍ଯ୍ୟର ନିନ୍ଦା କରିବ । ମାତ୍ର ତାଙ୍କର ଆଶା ବିଫଳ ହେଲା ।

ରେଗାନ୍ କହିଲା, "ବାପା, ତୁମେ ଟିକିଏ ଧୈର୍ଯ୍ୟ ଧର । ମୋର ଅପା କେବେ ତୁମପ୍ରତି ତାର କର୍ତ୍ତବ୍ୟରେ ତ୍ରୁଟି କରିପାରେ ବୋଲି ମୁଁ କଳ୍ପନା ସୁଦ୍ଧା କରି ନ ପାରେ । ମୋର ବିଶ୍ୱାସ, ଯଦି ସେ ତୁମ ପ୍ରତି ରୁକ୍ଷ ବ୍ୟବହାର କରିଥାଏ, ନିଶ୍ଚୟ ସେଥିରେ କିଛି କାରଣ ଥିବ । ତାର କୌଣସି ଦୋଷ ନାହିଁ । ତୁମେ ବୃଦ୍ଧ ଲୋକ । ଲୋକ ବୃଦ୍ଧ ହେଲେ ତାର ଜ୍ଞାନଶକ୍ତି ଲୋପ ପାଇଯାଏ । ତେଣୁ

ସେ ଅନ୍ୟମାନଙ୍କ ଉପରେ ପ୍ରଭୁତ୍ୱ ନ କରି ସେମାନଙ୍କ ଉପଦେଶ ଅନୁସାରେ ଚଳିବା ଉଚିତ । ତୁମେ ଗନେରିଲ୍ ପାଖକୁ ଯାଇ ନିଜର ଦୋଷ ସ୍ୱୀକାର କର ।”

ଲିଅର୍ ଏହା ଶୁଣି ଚିତ୍କାର କରି କହିଲେ, “କଅଣ ? ମୁଁ ଯାଇ ତା ପାଖରେ କ୍ଷମା ପ୍ରାର୍ଥନା କରିବି ? ତୁ ମୋତେ ପରାମର୍ଶ ଦେଉଛୁ ଯେ ମୁଁ ତାକୁ ଯାଇ କହିବି—ମୁଁ ବୁଢ଼ା ହୋଇଗଲିଣି । ବୁଢ଼ାମାନେ ଅକର୍ମଣ୍ୟ, ଅନାବଶ୍ୟକ । ମୁଁ ତୋର ପାଦତଳେ ପଡ଼ୁଛି; ମତେ ପେଟପାଇଁ ମୁଠାଏ ଖାଇବାକୁ ଓ ପିନ୍ଧିବାକୁ ଖଣ୍ଡେ କନା ଦେ ।”

କିଏ କାଏସକୁ ଏପରି ଦଣ୍ଡ ଦେଇଥିଲା, ତାହାର ଉତ୍ତର ଲିଅର୍ ପାଇ ପାରିଲେ ନାହିଁ । ରିଗାନ୍ ନିକଟରୁ ପଦେ ହେଲେ ମଧୁର କଥା ଶୁଣିବାକୁ ପାଇଲେ ନାହିଁ; ବରଂ ନିଜର ନିନ୍ଦା ଶୁଣିଲେ । ଶେଷରେ ରିଗାନ୍ କହିଲା, “ବାପା, ତୁମର ଏଠାକୁ ଆସିବା ଉଚିତ ହୋଇନାହିଁ । ମୁଁ ବର୍ତ୍ତମାନ ଗ୍ଲସେଷ୍ଟର୍‌ର ଜମିଦାରଙ୍କ ଅତିଥି ଭାବରେ ଅଛି । ତେଣୁ ମୁଁ ଏଠାରେ ତୁମକୁ ରଖିବାର ପ୍ରଶ୍ନ ଉଠିନପାରେ । ମୋ ମତରେ ତୁମେ ଗନେରିଲ୍‌ର ଘରକୁ ଯିବା ଉଚିତ ହେବ ।”

ଲିଅର୍ ଗନେରିଲ୍ ପାଖକୁ ଫେରିଯିବାକୁ ନିତାନ୍ତ ଅସ୍ୱୀକୃତ ହେଲେ ଏବଂ ରିଗାନ୍‌ର ଅତିଥି ହେବେ ବୋଲି କହିଲେ । ରିଗାନ୍ କହିଲା, “ତେବେ ମୁଁ ତୁମର ଅନୁଚରମାନଙ୍କ ମଧ୍ୟରୁ ତିରିଶ ଜଣଙ୍କୁ କେବଳ ପାଇଁ ରଖିପାରେ; ଅନ୍ୟମାନଙ୍କୁ ତୁମେ ବିଦାୟ କରିଦିଅ । ମୋ ମତରେ ସମସ୍ତଙ୍କୁ ବିଦାୟ କରିଦେଲେ ଭଲ ହେବ । ମୋର ଚାକରମାନେ ତୁମ କଥା ବୁଝିବେ । ଏତେଗୁଡ଼ାଏ ଅନୁଚର କଅଣ କରିବେ ?”

ଏବେ ଲିଅର୍ ସ୍ପଷ୍ଟଭାବରେ ବୁଝିପାରିଲେ ଯେ କେବଳ ଗନେରିଲ୍ ନୁହେଁ, ରିଗାନ ମଧ୍ୟ କୃତଘ୍ନ । ସେ ମଧ୍ୟ ଗନେରିଲ ଭଳି ତାଙ୍କ ପ୍ରତି ଦୁର୍ବ୍ୟବହାର କରିଛି; ମାତ୍ର ସେ ଏହାର କିଛି ପ୍ରତିକାର କରିବାକୁ ଅସମର୍ଥ ଥିଲେ । ତେଣୁ ସେ କେବଳ ଭଗବାନଙ୍କୁ ଡାକି କହିଲେ, "ହେ ଭଗବାନ୍, ମୁଁ ବୃଦ୍ଧ, ଦୁଃଖ ପରେ ଦୁଃଖ ଆସି ମୋ ଉପରେ ପଡ଼ୁଛି । ମୋତେ ଏହି ଦୁଃଖ ସହିବାକୁ ବଳ ଦିଅ, ଧୈର୍ଯ୍ୟ ଦିଅ । ଝିଅମାନେ ମୋ ଉପରେ ଯେଉଁ ଅନ୍ୟାୟ ଅତ୍ୟାଚାର କରୁଛନ୍ତି, ତାହା ଯେପରି ସହିପାରେ ।"

ତତ୍ପରେ ଲିଅର୍ ସଙ୍ଗରେ କେବଳ ବିଦୂଷକ ଓ କାଏସ୍‌ଙ୍କୁ ଘେନି ବାହାରିଗଲେ । ସେତେବେଳକୁ ରାତି ହୋଇଥାଏ । ପ୍ରବଳ ଝଡ଼ ବର୍ଷା ହେଉଥାଏ । ଅନ୍ଧକାରମୟ ପଥରେ ଯାଉ ଯାଉ କାଏସ୍ ବାଟବଣା ହୋଇଗଲେ । ଲିଅର୍‌ଙ୍କ ସଙ୍ଗରେ କେବଳ ବିଦୂଷକ ରହିଲା । କିଛି ଦୂର ଯିବାପରେ ସେମାନେ କୌଣସି ଆଶ୍ରୟ ସ୍ଥାନ ଖୋଜିଲେ । ଲିଅର୍‌ଙ୍କ ମନ ମଧ୍ୟରେ ପ୍ରବଳ ଝଡ଼ ଚାଲିଥାଏ । ସେ ଝିଅମାନଙ୍କ ଅନ୍ୟାୟ ଅତ୍ୟାଚାର କଥା ଭାବି ଭାବି ପାଗଳପରି ହୋଇଗଲେ । ସେ ବେଳେବେଳେ କହୁଥିଲେ, "ଏ ଝଡ଼ ପବନ ବରଂ ଭଲ । କୃତଘ୍ନ ଝିଅମାନଙ୍କଠାରୁ ଝଡ଼ ପବନ ବେଶି ଦୁଃଖ ଦେଉନାହିଁ ।"

କାଏସ୍ ଅନେକ ଅନୁସନ୍ଧାନ କରି ଶେଷରେ ଲିଅର୍‌ଙ୍କ ସହିତ ମିଳିତ ହେଲେ ଏବଂ ସମସ୍ତେ ଯାଇ ଗୋଟିଏ ଭଗ୍ନ କୁଟୀରରେ ଆଶ୍ରୟ ନେଲେ । ଲିଅର୍ ସେ କୁଡ଼ିଆରେ ପ୍ରବେଶ କରୁ ନଥିଲେ । କାଏସ୍ ତାଙ୍କୁ ବାଧ କରି ଘରଭିତରକୁ ନେଲା । ସେ ଘର ଭିତରେ ଆଗରୁ ଜଣେ ପାଗଳ ଆଶ୍ରୟ ନେଇଥିଲା । ସେ ଏଣୁତେଣୁ ଗୀତ ବୋଲି ନାଚୁଥାଏ । ଲିଅର୍ ତାକୁ କହିଲେ, "ତୋର ଝିଅ ଦୁହିଙ୍କୁ ତୋର ସର୍ବସ୍ୱ ଦେଇ ଏପରି ହୋଇଛୁ କିନା !"

ଲିଅର୍ ଓ କାଏସ୍ ଜାଣିପାରିଲେ ଯେ ଏହି ଲୋକଟିର ନାମ ଟମ୍ । କିନ୍ତୁ ପ୍ରକୃତ ପକ୍ଷରେ ଏହି ପାଗଳଟି ଗ୍ଲୁସେଷ୍ଟର୍‌ର ଜମିଦାରଙ୍କର ବଡ଼ପୁଅ । ସାନପୁଅ ଏଡ଼ମଣ୍ଡର ମିଛ କଥାରେ ଧନ୍ଦି ପିତା ତାଙ୍କୁ ଗୃହରୁ ବିତାଡ଼ିତ କରି ଦେଇଥିଲେ । ଏଡ଼୍‌ମଣ୍ଡ ଜଣେ ଦୁଷ୍ଟ ପ୍ରକୃତିର ଲୋକ । ସେ ଜାଣିଥିଲା ଯେ ବଡ଼ଭାଇ ଏଡ଼୍‌ଗାର ଜମିଦାରୀର ମାଲିକ ହେବ; ତେଣୁ ସେ ପିତାଙ୍କ ନିକଟରେ ନାନା ମିଥ୍ୟା କଥା କହି ଏଡ଼୍‌ଗାରଙ୍କୁ ଗୃହରୁ ବିତାଡ଼ିତ କରିଥିଲା । ଏଡ଼୍‌ଗାର ଗୃହତ୍ୟାଗ କରି ନିଜର ବେଶ ବଦଳାଇ ପାଗଳ ବୋଲି ଛଳନା କରିଥିଲେ । ତାହା କରି ନଥିଲେ ହୁଏତ ତାଙ୍କୁ କାରାଗାରରେ ନିକ୍ଷେପ କରାଯାଇଥାନ୍ତା ।

ଗ୍ଲୁସେଷ୍ଟର୍‌ର ଜମିଦାର ଗୋନେରିଲ୍ ପିତାଙ୍କ ପ୍ରତି ବ୍ୟବହାର ଦେଖି ନିତାନ୍ତ ଦୁଃଖିତ ଓ ଲଜ୍ଜିତ ହୋଇଥିଲେ । ସେ ଲିଅର୍‌ଙ୍କର ସନ୍ଧାନ ପାଇବା ସକାଶେ ନିଜର ଗଡ଼ ଛାଡ଼ି ଏଣେତେଣେ ବୁଲୁଥିଲେ । ତାଙ୍କ ଅନୁପସ୍ଥିତିରେ ସୁଯୋଗ ନେଇ ତାଙ୍କ କନିଷ୍ଠ ପୁତ୍ର ଏଡ଼୍‌ମଣ୍ଡ ନିଜ ପି ାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିଲେ ।

ଦୈବାତ୍ ଗ୍ଲୁସେଷ୍ଟର୍‌ର ଜମିଦାର ସେହି କୁଡ଼ିଆ ନିକଟରେ ପହଞ୍ଚି ଲିଅର୍‌ଙ୍କର ଦେଖାପାଇଲେ । ପାଗଳ ଟମ ଯେ ତାଙ୍କର ପୁଅ, ଏହା ସେ ଜାଣିପାରି ନ ଥିଲେ । କାଏସ୍ ଓ ଛଦ୍ମବେଶୀ ଏଡ଼୍‌ଗାରଙ୍କ ସାହାଯ୍ୟରେ ସେ ଲିଅର୍‌ଙ୍କୁ ନିଜର ଗୋଟିଏ ଖମାରଘରକୁ ନେଇ-ଗଲେ । ଏଥିମଧ୍ୟରେ କାଏସ୍ ଯେ ପ୍ରକୃତରେ କେଣ୍ଟ୍‌ର ଜମିଦାର, ଏହା ଜଣା ଗଲା । ସେ ଲିଅର୍‌ଙ୍କୁ ଡୋଭାରସ୍ଥିତ ଏକ ଦୁର୍ଗକୁ ନେଇଗଲେ । ତାଙ୍କର ଏହି ଦୁର୍ଗଟି ଇଂଲଣ୍ଡର ଦକ୍ଷିଣ ପ୍ରାନ୍ତରେ ଇଂଲିଶ ପ୍ରଣାଳୀ ନିକଟରେ ଅବସ୍ଥିତ । ଏହାର ଠିକ୍ ବିପରୀତ ପାର୍ଶ୍ୱରେ ଫ୍ରାନସ ରାଜ୍ୟ । କେଣ୍ଟର ଜମିଦାର ଏହି ପ୍ରଣାଳୀ ପାରହୋଇ ଫ୍ରାନ୍‌ସରେ

ଉପସ୍ଥିତ ହେଲେ ଏବଂ ସେଠାରେ ଫ୍ରାନ୍‌ସର ରାଣୀ କଡେଲିଆଙ୍କୁ ତାଙ୍କ ପିତାଙ୍କର ସମସ୍ତ ସମ୍ବାଦ ଜଣାଇଲେ । ଗନେରିଲ୍ ଓ ରିଗାନ୍ କପରି ପିତାଙ୍କ ଉପରେ ଅତ୍ୟାଚାର କରିଅଛନ୍ତି, ତାହା ଶୁଣି କଡେଲିଆଙ୍କ ମନରେ ଗଭୀର ଦୁଃଖ ଜାତହେଲା । ସେ ସ୍ୱାମୀଙ୍କୁ କହିଲେ, "ମୋର ପିତାଙ୍କୁ ଉଦ୍ଧାର କରି ପୁଣି ଇଂଲଣ୍ଡର ସିଂହାସନରେ ବସାଇବାକୁ ହେବ । ଶୀଘ୍ର ସୈନ୍ୟ ସଂଗ୍ରହ କରି ଯୁଦ୍ଧ କରିବାକୁ ଯିବା ।" ସେ ନିଜେ ଗୋଟିଏ ସୈନ୍ୟଦଳ ସହିତ ଡୋଭର୍‌ରେ ଆସି ଅବସ୍ଥାନ କଲେ ।

ଗ୍ଲୋଷ୍ଟର୍‌ର ଜମିଦାର ଲୀଅର୍‌ଙ୍କୁ ସାହାଯ୍ୟ କରୁଥିବା ଜାଣିପାରି ରିଗାନ୍ ଓ ତାର ସ୍ୱାମୀ ଦଣ୍ଡସ୍ୱରୂପ ତାଙ୍କ ଚକ୍ଷୁ ଦୁଇଟି ନଷ୍ଟ କରାଇଦେଲେ ଏବଂ ତାଙ୍କୁ ଜମିଦାରୀରୁ ବାହାର କରିଦେଲେ । କିନ୍ତୁ ଏହି ଦୁର୍ଦ୍ଦିନରେ ଛଦ୍ମବେଶୀ ପାଗଳ ଟମ୍ ତାଙ୍କୁ ନେଇ ଡୋଭର୍‌ଠାରେ ଉପସ୍ଥିତ ହେଲେ ଏବଂ ସେ ଏହିପରି ଲୀଅର୍‌ଙ୍କ ସହିତ ମିଳିତ ହେଲେ । କିନ୍ତୁ ସେତେବେଳକୁ ରାଜା ଲୀଅର୍ ସମ୍ପୂର୍ଣ୍ଣରୂପେ ଉନ୍ମାଦଗ୍ରସ୍ତ ହୋଇପଡ଼ିଥିଲେ । ତେଣୁ ସେ କାହାରିକୁ ଚିହ୍ନିପାରି ନ ଥିଲେ । ସେ ମୁଣ୍ଡରେ ଗୁଡ଼ାଏ ପତ୍ର ଓ ଫୁଲର ଟୋପି ପିନ୍ଧି ଯଥେଚ୍ଛା ପ୍ରଳାପ କରୁଥିଲେ ।

କଡେ଼ଲିଆ ଯେତେବେଳେ ଡୋଭର୍‌କୁ ଆସି ପିତାଙ୍କ ସଙ୍ଗେ ସାକ୍ଷାତ୍ କଲେ ସେତେବେଳେ ଲୀଅର୍ ଆଦୌ ନିଜର ଝିଅକୁ ଚିହ୍ନିପାରି ନ ଥିଲେ । ମାତ୍ର କ୍ରମେ କ୍ରମେ ତାଙ୍କର ଉନ୍ମାଦ ବେଗ ଭଲ ହୋଇ ଆସିଲା । ସେ କଡେ଼ଲିଆକୁ କହିଲେ, "ମୁଁ ବୃଦ୍ଧ, ନିର୍ବୋଧ । ବୋଧହୁଏ ମୋର ମସ୍ତିଷ୍କ ଠିକ୍ ନାହିଁ । ମୁଁ ତୋତେ ଚିହ୍ନିପାରୁଛି । ପୁଣି ବେଳେବେଳେ ମୋର ସନ୍ଦେହ ହେଉଛି ।" ସେ ବଡ଼ ବିକଳ ଭାବରେ ପାଖରେ ଥିବା ଲୋକଙ୍କୁ ପଚାରି କହୁଥିଲେ,

"ମୋତେ ଦେଖି ହସ ନାହିଁ । ହୁଏତ ମୁଁ ନିର୍ବୋଧ ଭଳି କାର୍ଯ୍ୟ କରୁଛି । କିନ୍ତୁ ମୋର ବିଶ୍ୱାସ, ଏଇଟି ମୋର କନ୍ୟା କର୍ଡ଼େଲିଆ ।"

କର୍ଡ଼େଲିଆ ଦେଖିଲେ ଯେ ଲିଅର୍ ତାଙ୍କୁ ଚିହ୍ନି ପାରିଛନ୍ତି । ପିତାଙ୍କର ରୋଗ ଭଲ ହୋଇଥିବାରୁ ସେ ଆନନ୍ଦିତା ହେଲେ । କିନ୍ତୁ ଗନେରିଲ୍ ଓ ରିଗାନ୍ ତାଙ୍କ ପ୍ରତି ଯେଉଁ ଦୁର୍ବ୍ୟବହାର କରିଥିଲେ, ତାହା ମନେପକାଇ ଲିଅର୍ ଭାବୁଥିଲେ--କର୍ଡେଲିଆ ମୋତେ ଭଲପାଇବା ଅସମ୍ଭବ । ଯେଉଁମାନଙ୍କୁ ମୁଁ ମୋର ସର୍ବସ୍ୱ ଦେଇଥିଲି, ସେମାନେ ମୋ ପ୍ରତି ଏପରି ଅତ୍ୟାଚାର କଲେ । ଆଉ କର୍ଡ଼େଲିଆ ପ୍ରତି ମୁଁ କୌଣସି ଅନୁଗ୍ରହ ଦେଖାଇନାହିଁ । ତେଣୁ ସେ ମୋତେ ଭଲ ନ ପାଇବାର କାରଣ ଅଛି ।

କିନ୍ତୁ କର୍ଡ଼େଲିଆ ଲିଅର୍‌ଙ୍କ ପ୍ରତି ଆଦର ଦେଖାଇ କହିଲି, "ବାପା, ମୁଁ ତୁମଠାରେ କେତେ ଋଣୀ, ତାହା ମୁଁ ଜାଣେ । ଜୀବନ ଦେଲେ ମଧ୍ୟ କୌଣସି ଝିଅ ତାର ପିତାଙ୍କ ଋଣ ଶୁଝି ନ ପାରେ । ତୁମେ ସୁଖଶାନ୍ତିରେ ରହିପାରିଲେ ମୋର ପରମ ଆନନ୍ଦ ।" ବୃଦ୍ଧ ଲିଅର୍ କହିଲେ, "ମାଆ, ମୋର ସବୁ ଦୋଷ ଭୁଲିଯାଅ । ତୋର ବୁଢ଼ା ବାପକୁ କ୍ଷମା କର । ମୁଁ ସହଜେ ବୃଦ୍ଧ ଓ ନିର୍ବୋଧ ।"

ଶେଷରେ ଉଭୟ ପକ୍ଷର ସୈନ୍ୟ ପରସ୍ପରକୁ ଆକ୍ରମଣ କଲେ । ଏକପକ୍ଷରେ ଫ୍ରାନ୍ସର ରାଜାଙ୍କ ସୈନ୍ୟମାନେ ଥିଲେ । ଏଡ଼ଗାର ଓ କେଣ୍ଟର ଜମିଦାର ଏହି ସୈନ୍ୟମାନଙ୍କୁ ପରିଚାଳନା କରୁଥିଲେ । ଇଂରେଜ ସୈନ୍ୟମାନଙ୍କର ନେତା ଥିଲେ ଆଲବାନି ଓ କର୍ଣ୍ଣୱାଲର ଡିଉକ୍‌ଦ୍ୱୟ ଏବଂ ଗ୍ଲୋସେଷ୍ଟରଙ୍କ କନିଷ୍ଠପୁତ୍ର ଏଡ୍‌ମଣ୍ଡ । ଗନେରିଲ୍ ଓ ରିଗାନ୍ ମଧ୍ୟ ନିଜ ନିଜ ସ୍ୱାମୀଙ୍କ ସହିତ ଡୋଭରକୁ ଯାଇଥିଲେ । ସେ ଦୁହିଙ୍କର ପ୍ରକୃତ ଉଦ୍ଦେଶ୍ୟ ଭିନ୍ନ ଥିଲା । ଏଡ୍‌ମଣ୍ଡ ଆଶା କରିଥିଲା ଯେ କୌଣସି ପ୍ରକାରେ ସେ ଗନେରିଲ୍ ବା ରିଗାନ୍‌କୁ

ବିବାହ କଲେ ଇଂଲଣ୍ଡର ଅର୍ଦ୍ଧ ରାଜ୍ୟର ଅଧିକାରୀ ହେବ । ତେଣୁ ସେ ଉଭୟଙ୍କୁ ଭଲ ପାଉଥିବାର ଛଳନା କରୁଥିଲା । ଗନେରିଲ୍ ଓ ଓ ରେଗାନ୍ ମଧ୍ୟ ଏଡ୍‌ମଣ୍ଡକୁ ସନ୍ତୁଷ୍ଟ କରି ରଖିବାପାଇଁ ଚେଷ୍ଟା କରୁଥିଲେ ।

ଏହି ଯୁଦ୍ଧରେ ଦୁର୍ଭାଗ୍ୟବଶତଃ ଫରାସୀ ସୈନ୍ୟମାନେ ହାରିଗଲେ । ଏଡ୍‌ମଣ୍ଡ ଲିଅର୍ ଓ କର୍ଡ଼େଲିଆ ଦୁହିଙ୍କୁ ବନ୍ଦୀ କରି ନେଲା ଓ ଗୋପନରେ କର୍ଡେଲିଆକୁ ହତ୍ୟା କରାଇଲା; କାରଣ କର୍ଡ଼େଲିଆ ଲିଅର୍‌ଙ୍କ ଉତ୍ତରାଧିକାରୀମାନଙ୍କ ମଧ୍ୟରୁ ଜଣେ । ତେଣୁ ତାକୁ ହତ୍ୟା କରିଦେଲେ ନିଜେ ରାଜା ହେବାରେ ବିଶେଷ ଅସୁବିଧା ହେବ ନାହିଁ ।

ଏଣେ ଇଂରେଜ ପକ୍ଷରେ ପରସ୍ପର ମଧ୍ୟରେ ସନ୍ଦେହ ଓ ଅବିଶ୍ୱାସ ପୂରିରହିଥିଲା । ରେଗାନ୍‌ର ସ୍ୱାମୀ (କର୍ଣ୍ଣୱାଲର ଡିଉକ୍)ଙ୍କର ମୃତ୍ୟୁ ହୋଇଥିଲା । ତେଣୁ ରେଗାନ୍ ଏଡ୍‌ମଣ୍ଡକୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କଲା । କିନ୍ତୁ ଏଥିରେ ଗନେରିଲ୍‌ର ଈର୍ଷା ଜନ୍ମିଲା । ସେ କୌଶଳରେ ବିଷ ଦେଇ ରେଗାନ୍‌ର ମୃତ୍ୟୁ ଘଟାଇଲା ।

ଗନେରିଲ୍‌ର ସ୍ୱାମୀ ଆଲବାନିର ଡିଉକ୍ ଭଲଲୋକ ଥିଲେ; ମାତ୍ର ତାଙ୍କର ମନରେ ଦୃଢ଼ତା ନଥିଲା । ନିଜ ସ୍ତ୍ରୀର କୁକାର୍ଯ୍ୟମାନ ଜାଣି ସୁଦ୍ଧା ସେ କିଛି କରୁ ନଥିଲେ । କିନ୍ତୁ ତାର ଅନ୍ୟାୟର ମାତ୍ରା ଅତି ବେଶୀ ହେବାରୁ ସେ ଆଉ ନୀରବ ହୋଇ ରହିପାରିଲେ ନାହିଁ । ସେ ଗନେରିଲ୍‌କୁ ବନ୍ଦୀ କରି ରଖିଲେ । ବନ୍ଦିଶାଳାରେ ଥିବା ଅବସ୍ଥାରେ ସେ ଆତ୍ମହତ୍ୟା କଲା । ଯୁଦ୍ଧକ୍ଷେତ୍ରରେ ଦୁଷ୍ଟ ଏଡ୍‌ମଣ୍ଡ ଏଡ୍‌ଗାରଙ୍କଦ୍ୱାରା ନିହତ ହେଲା ।

କର୍ଡ଼େଲିଆର ମୃତ୍ୟୁରେ ଲିଅର୍ ଅତ୍ୟନ୍ତ ଦୁଃଖାଭିଭୂତ ହୋଇପଡ଼ିଲେ । ତାଙ୍କର ସ୍ମୃତିଶକ୍ତି ଲୋପ ପାଇଗଲା । ସେ ପୁନରାୟ

ଉନ୍ମାଦଗ୍ରସ୍ତ ହୋଇପଡ଼ିଲେ । କେଣ୍ଟ୍‌ର ଜମିଦାର ତାଙ୍କୁ ସମସ୍ତ ସମ୍ବାଦ ଜଣାଇଲେ; ମାତ୍ର ସେ କିଛି ବୁଝିପାରି ନ ଥିଲେ । ଶେଷରେ ସେ ବ୍ୟାକୁଳ ହୋଇ କହିଲେ, "କର୍ଡ଼େଲିଆ, ତୁ ଗୁଲିଗଲୁ—ଚିରକାଳପାଇଁ ଗୁଲିଗଲୁ—ଆଉ କଅଣ ଫେରିଆସିବୁ ନାହିଁ ?" ଏହିପରି କହୁଥିବାବେଳେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଲିଅର୍‌ଙ୍କର ଦୁଃଖମୟ ଜୀବନର ଅବସାନ ଘଟିଲା । ସେ ରାଜ୍ୟ ହରାଇଥିଲେ, ସ୍ନେହର କନ୍ୟା କର୍ଡ଼େଲିଆକୁ ହରାଇଥିଲେ, ଯୁଦ୍ଧରେ ପରାସ୍ତ ହୋଇଥିଲେ; ମାତ୍ର ଦୁଷ୍ଟମାନେ ମଧ୍ୟ ପାପର ଉପଯୁକ୍ତ ଦଣ୍ଡ ଭୋଗିଥିଲେ । ବିଷ ପ୍ରୟୋଗରେ ଗୋନରିଲ୍ ମୃତ୍ୟୁ ହୋଇଥିଲା । ଗନେରିଲ୍ ବନ୍ଦିଶାଳାରେ ଆତ୍ମହତ୍ୟା କରିଥିଲା । ଏଡ଼୍‌ମଣ୍ଡ ନିଜ ଭାଇ ଏଡ଼୍‌ଗାରଦ୍ୱାରା ଯୁଦ୍ଧକ୍ଷେତ୍ରରେ ନିହତ ହୋଇଥିଲା । ପରିଶେଷରେ ଆଲବାନିର ଡିଉକ ସମଗ୍ର ଇଂଲଣ୍ଡର ରାଜା ହେଲେ । ଗ୍ଲଷ୍ଟରର ବୃଦ୍ଧ ଜମିଦାରଙ୍କର ମୃତ୍ୟୁ ହେବାରୁ ଏଡ଼୍‌ଗାର ପିତାଙ୍କ ଜମିଦାରୀ ପାଇଲେ । ଏଡ଼୍‌ଗାରଙ୍କ ସାହାଯ୍ୟରେ ଆଲ୍‌ବାନିର ଡିଉକ୍ ଇଂଲଣ୍ଡରେ ସୁଶାସନ ପ୍ରତିଷ୍ଠା କରି ପ୍ରଜାମାନଙ୍କର ଶ୍ରଦ୍ଧାଭାଜନ ହେଲେ । ଇଂଲଣ୍ଡ ଧନଧାନ୍ୟରେ ପୂରିଉଠିଲା; ରାଜ୍ୟରେ ଶାନ୍ତି ବିରାଜମାନ ହେଲା ।

---

# ହ୍ୟାମଲେଟ୍

ଏକସମୟରେ ଡେନମାର୍କର ଯୁବରାଜ ଯୁବକ ହାମ୍ଲେଟ୍ ଅତି ଆନନ୍ଦରେ କ୍ରୀଡ଼ା-କୌତୁକରେ ସମୟ କଟାଉଥିଲେ । ବୀରୋଚିତ ସାହସ ପ୍ରଦର୍ଶନ କରିବାରେ ଓ ଶିକାର କରିବାରେ ତାଙ୍କର ବିଶେଷ ନୈପୁଣ୍ୟ ଥିଲା । ତାଙ୍କ ଭଳି ବୀର ଯୁବକ ସମଗ୍ର ଡେନମାର୍କରେ ବିରଳ ଥିଲେ; କିନ୍ତୁ ତାଙ୍କ ଜୀବନରେ ଘୋର ବିପର୍ଯ୍ୟୟ ଘଟିଲା । ରହସ୍ୟଜନକ ଭାବରେ ଦିନେ ହଠାତ୍ ତାଙ୍କ ପିତା ଡେନମାର୍କର ରାଜାଙ୍କର ମୃତ୍ୟୁ ହେଲା । ଏପରି ଜଣେ ଦୟାଳୁ ଓ ନ୍ୟାୟପରାୟଣ ରାଜାଙ୍କ ମୃତ୍ୟୁରେ ପ୍ରଜାସାଧାରଣ ଦୁଃଖ ପ୍ରକାଶ କଲେ । ଯୁବରାଜ ହାମଲେଟ୍‌ଙ୍କ ପକ୍ଷରେ ପିତାଙ୍କ ମୃତ୍ୟୁ ଅସହ୍ୟ ଦୁଃଖର କାରଣ ହେଲା । ସେ ଶୁଣିବାକୁ ପାଇଲେ ଯେ ରାଜା ଉପବନରେ ଶୟନ କରିଥିବା ଅବସ୍ଥାରେ ଗୋଟିଏ ସର୍ପ ତାହାଙ୍କୁ ଦଂଶନ କରିବାରୁ ତାଙ୍କର ହଠାତ୍ ମୃତ୍ୟୁ ହେଲା । ହାମଲେଟ୍ ଘୋର ଦୁଃଖରେ ମ୍ରିୟମାଣ ହୋଇ ଚିନ୍ତାକୁଳ ଭାବରେ ଦିନ କଟାଇବାକୁ ଲାଗିଲେ ।

ରାଜାଙ୍କର ମୃତ୍ୟୁର ଅବ୍ୟବହିତ ପରେ ତାଙ୍କର କନିଷ୍ଠଭ୍ରାତା (ହାମଲେଟ୍‌ଙ୍କର ପିତୃବ୍ୟ) କ୍ଲଡ଼ିଅସ୍ ବିଧବା ରାଣୀଙ୍କୁ ବିବାହ କରି ରାଜସିଂହାସନରେ ଉପବେଶନ କଲେ । ସ୍ୱାମୀଙ୍କ ମୃତ୍ୟୁ ପରେ ପରେ ତାଙ୍କର ମାତା ଏତେ ଶୀଘ୍ର ସ୍ୱାମୀଙ୍କୁ ଭୁଲିଯାଇ ପୁନର୍ବିବାହ କରିବା ହାମଲେଟ୍‌ଙ୍କ ମନରେ ବିଶେଷ ଆଘାତ ଦେଲା । ସେ ଏହି ବିଷୟରେ ଯେତିକି ଚିନ୍ତା କଲେ, ତାଙ୍କର ମନୋଦୁଃଖ ସେତିକି

ବୃଦ୍ଧି ପାଇଲା । ଜଗତ୍ର ତାଙ୍କୁ ବିଷମୟ ବୋଧ ହେଲା । ସେ କ୍ରୀଡ଼ା-କୌତୁକ, ଶିକାର, ସାଙ୍ଗସୁଖ ସବୁ ଛାଡ଼ିଦେଇ ଗଭୀର ଶୋକରେ ମଗ୍ନ ରହିଲେ ।

ପିତୃବ୍ୟଙ୍କ ପ୍ରତି ହାମଲେଟ୍‌ଙ୍କର ବିଶେଷ ଅନୁରକ୍ତି ନ ଥିଲା; କାରଣ କ୍ଳଡ଼ିଅସ୍ ଅତି ହୀନଚରିତ୍ର ବ୍ୟକ୍ତି ଥିଲେ । ତାଙ୍କର ପିତା ଯେତିକ ଉଦାର ଓ ସରଳ ଥିଲେ, କ୍ଳଡ଼ିଅସ୍ ସେତିକ ନୀଚମନା ଓ କୁଟିଳ ପ୍ରକୃତିର ଥିଲେ । ଏପରି ଜଣେ ବ୍ୟକ୍ତିକୁ ତାଙ୍କ ମାତା ବିବାହ କରିଥିବାର ଚିନ୍ତା କରି ସେ ନିତାନ୍ତ କ୍ଷୁବ୍ଧ ହେଉଥିଲେ । ଅତଏବ ମାତା ହିସାବରେ ସେ ତାଙ୍କୁ ଉପଯୁକ୍ତ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ତାଙ୍କ ମନରେ ସନ୍ଦେହ ଜନ୍ମିଲା ଯେ ତାଙ୍କ ପିତାଙ୍କ ମୃତ୍ୟୁରେ କିଛି ରହସ୍ୟ ଅଛି । ସର୍ପାଘାତରେ ତାଙ୍କର ମୃତ୍ୟୁ ଘଟିବା ହୁଏତ ସତ୍ୟ ନୁହେଁ । ରାଜ୍ୟ ଲୋଭରେ କ୍ଳଡ଼ିଅସ୍ ଜ୍ୟେଷ୍ଠଭ୍ରାତାଙ୍କୁ ହତ୍ୟା କରାଇ ଅଛନ୍ତି ଏବଂ ଏହା ତାଙ୍କ ମାତାଙ୍କ ଗୋଚରରେ କରାଯାଇଥିବା ସମ୍ଭବ । ତା ନୋହିଥିଲେ କି ସେ ଏତେ ଶୀଘ୍ର ନିଜ ସ୍ୱାମୀଙ୍କୁ ଭୁଲି ଯାଇ ଅନ୍ୟ ଜଣକୁ ବିଭା ହୋଇଥାନ୍ତେ । ଏହି ଚିନ୍ତାରେ ହାମଲେଟ୍ ପାଗଳ ପ୍ରାୟ ହୋଇଗଲେ ।

ନୂଆ ରାଜା ଓ ରାଣୀ ଦେଖିଲେ ଯେ ହାମଲେଟ୍ ସର୍ବଦା ବିଷାଦରେ ନିମଗ୍ନ; ନିର୍ଦ୍ଦିଷ୍ଟ ସମୟ ଗତ ହେଲେ ମଧ୍ୟ ସେ ଶୋକ-ସୂଚକ ପୋଷାକ ତ୍ୟାଗ କରିବାକୁ ଏକାନ୍ତ ଅନିଚ୍ଛୁକ । ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ହାମଲେଟ୍ ନିଜ ପିତାଙ୍କ ମୃତ୍ୟୁ ସମ୍ପର୍କରେ ସେ ଦୁହିଁଙ୍କୁ ସନ୍ଦେହ କରୁଛନ୍ତି । ତେଣୁ ସେମାନେ ହାମଲେଟଙ୍କ ମନ ପରିବର୍ତ୍ତନ କରିବା ପାଇଁ ଯଥେଷ୍ଟ ଉଦ୍ୟମ କଲେ । ହାମଲେଟ୍‌ଙ୍କ ଶୋକସୂଚକ ପୋଷାକ ଦେଖିଲାକ୍ଷଣି

ସେମାନଙ୍କ ମନରେ ରାଜାଙ୍କ ହତ୍ୟା ସମ୍ପର୍କିତ ସମସ୍ତ ଘଟଣା ଜାଗି-ଉଠୁଥିଲା ଓ ସେମାନେ ନିଜ ଅପରାଧ ସ୍ମରଣ କରି ମନେ ମନେ ଲଜ୍ଜିତ ହେଉଥିଲେ । ତେଣୁ ସେମାନେ ହାମଲେଟ୍‌ଙ୍କୁ ସେହି ପୋଷାକ ତ୍ୟାଗ କରିବାକୁ ବାରମ୍ବାର ଅନୁରୋଧ କରୁଥିଲେ । କିନ୍ତୁ ଏଥିରେ କିଛି ଫଳ ହୋଇ ନ ଥିଲା । ସେମାନେ ହାମଲେଟ୍‌ଙ୍କର ବିଷାଦର କାରଣ ସନ୍ଧାନ କରିବାକୁ ଲାଗିଲେ ।

ଏଥିପୂର୍ବରୁ ଜଣେ ରାଜକର୍ମଚାରୀଙ୍କ କନ୍ୟା ପ୍ରତି ହାମଲେଟ୍ ଆସକ୍ତ ଥିଲେ । ରାଜା ଓ ରାଣୀ ମନେ ମନେ ସ୍ଥିର କଲେ ଯେ ତାଙ୍କ ବିଷାଦର କାରଣ ହେଉଛି ପ୍ରେମ ।

ଏହି ସମୟରେ ଗୋଟିଏ ବିଚିତ୍ର ଘଟଣା ଘଟିଲା । ଦୁର୍ଗର ତୋରଣ ନିକଟରେ ରାତିରେ କେତେ ଜଣ ସୈନିକ ପହରା ଦିଅନ୍ତି । ଏକାଦିକ୍ରମେ ତିନି ରାତି ପର୍ଯ୍ୟନ୍ତ ସେମାନେ ଗୋଟିଏ ଭୂତର ଆବିର୍ଭାବ ଦେଖିବାକୁ ପାଇଲେ । ହୋରେସିଓ ନାମକ ହାମଲେଟ୍-ଙ୍କର ଜଣେ ବନ୍ଧୁ ମଧ୍ୟ ଏହି ଭୂତକୁ ଦେଖିପାରି ହାମଲେଟ୍‌ଙ୍କୁ ଜଣାଇଲେ । ଭୂତଟି ଠିକ୍ ଅର୍ଦ୍ଧରାତ୍ର ସମୟରେ ଦେଖାଦେଉଥିଲା । ସେ ଆପାଦମସ୍ତକ ଭୂତପୂର୍ବ ରାଜାଙ୍କ ପୋଷାକ ପରିଧାନ କଲାପରି ଜଣାପଡ଼ୁଥିଲା ଓ ତାର ମୁହଁର ଚେହେରା ଠିକ୍ ମୃତ ରାଜାଙ୍କ ଚେହେରା ପରି ଥିଲା । ପ୍ରହରୀମାନେ ଡାକିଲେ ସେ କିଛି ଉତ୍ତର ଦେଉ ନ ଥିଲା । କେବଳ ଥରେ ସେ କିଛି କହିବା ପାଇଁ ଚେଷ୍ଟା କଲା ବେଳକୁ କୁକୁଡ଼ା ରାବିଉଠିଲା ଓ ସଙ୍ଗେ ସଙ୍ଗେ ସେ ଉଭେଇଗଲା ।

ହାମଲେଟ୍ ପ୍ରହରୀମାନଙ୍କୁ ନାନା ପ୍ରଶ୍ନ କରି ଜାଣିପାରିଲେ ଯେ ଭୂତର ଆବିର୍ଭାବ ଘଟଣା ସତ୍ୟ ଅଟେ । ତହୁଁ ସେ ପରଦିନ ରାତ୍ରିରେ ନିଜେ ପ୍ରହରୀମାନଙ୍କ ସହିତ ରହି ଭୂତକୁ ଦେଖିବେ ବୋଲି ସ୍ଥିର କଲେ । ସେ ମନେ କଲେ ଯେ ଭୂତଟି ଯଦି ତାଙ୍କ ମୃତ

ପିତାଙ୍କର ହୋଇଥାଏ, ତେବେ ସେ ତାଙ୍କୁ କିଛି କହିବାକୁ ଦେଖା-ଦେଇଥିବ ଏବଂ ଭୂତ ସହିତ କଥାବାର୍ତ୍ତା ହେବା ପରେ ତାଙ୍କ ମନର ସନ୍ଦେହ ଦୂର ହୋଇପାରେ ।

ତପ୍ପର ଦିନ ରାତିରେ ହାମଲେଟ ନିଜର ବନ୍ଧୁ ହୋରେସିଓ ଏବଂ ଜଣେ ବିଶ୍ୱସ୍ତ ପ୍ରହରୀ ସହିତ ଦୁର୍ଗର ତୋରଣ ନିକଟରେ ଜଗି ରହିଲେ । ଦୁର୍ଗର ବାହାରେ ଚାରି ନୀରବ ଓ ନିସ୍ତବ୍ଧ ଥିଲା; କିନ୍ତୁ ଦୁର୍ଗ ମଧ୍ୟରେ ରାଜା ଓ ରାଣୀ ମଦ୍ୟପାନ କରି ଆମୋଦ-ପ୍ରମୋଦରେ ରତ ଥିଲେ । ସେମାନଙ୍କର ଆନନ୍ଦଧ୍ୱନି ବେଳେ ବେଳେ ଧୀର ଭାବରେ ବାହାରକୁ ଶୁଣାଯାଉଥିଲା । ଏପରି କିଛି ସମୟ ଅତୀତ ହେଲା । ପ୍ରାୟ ଅର୍ଦ୍ଧରାତ୍ର; ହଠାତ୍ ହୋରେସିଓ ହାମଲେଟ୍ଙ୍କ କାନ୍ଧରେ ହାତ ମାରି କହିଲେ, "ଦେଖନ୍ତୁ, ଦେଖନ୍ତୁ, ଏଇ ଭୂତ ଆସୁଛି ।"

ହାମଲେଟ ଦେଖିଲେ ଯେ ଆକାରରେ ଓ ପୋଷାକ-ପରିଚ୍ଛଦରେ ଭୂତ ଠିକ ତାଙ୍କ ପିତାଙ୍କ ପରି । ତେଣୁ ସେ କହି ଉଠିଲେ, "ଆପଣଙ୍କର ଏପରି ଆସିବାର ଉଦ୍ଦେଶ୍ୟ କଅଣ ? ଆପଣ ଠିକ୍ ମୋର ପିତାଙ୍କ ପରି ଦିଶୁଅଛନ୍ତି । କହନ୍ତୁ, ଆପଣ ପ୍ରକୃତରେ ମୋର ପିତା କି ? ମୁଁ ଆପଣଙ୍କ ପାଇଁ କଅଣ କରିପାରେ, କହନ୍ତୁ ।"

ଭୂତଟି ତାହା ସହିତ ଟିକିଏ ଦୂରକୁ ଏକାକୀ ଯିବା ପାଇଁ ହାମଲେଟ୍ଙ୍କୁ ସଙ୍କେତ କଲା । ହୋରେସିଓ ଓ ସୈନ୍ୟଙ୍କୁ ଛାଡ଼ି ହାମଲେଟ୍ ଭୂତ ସଙ୍ଗେ ଯିବାକୁ ବାହାରିଲେ । ତହୁଁ ହୋରେସିଓ କହିଲେ, 'ଆପଣ ଏପରି ଦୁଃସାହସ କରନ୍ତୁ ନାହିଁ । ପଥରେ ଯେ ବିପଦ ନାହିଁ, କିଏ କହିପାରିବ ?'' ମାତ୍ର ହାମଲେଟ୍ ଏ କଥାପ୍ରତି କର୍ଣ୍ଣପାତ ନ କରି ଚାଲିଗଲେ ।

ଗୋଟିଏ ଏକାନ୍ତ ସ୍ଥାନରେ ପହଞ୍ଚିବାରୁ ଭୂତ ହାମଲେଟ୍ଙ୍କୁ କହିଲା, "ବତ୍ସ, ମୁଁ ବାସ୍ତବରେ ତୋର ପିତାଙ୍କର ପ୍ରେତାତ୍ମା ।

ସମସ୍ତେ ଶୁଣିଛନ୍ତି ଯେ ମୁଁ ବଗିଚାରେ ଶୋଇଥିବାବେଳେ ଗୋଟିଏ ସାପ କାମୁଡ଼ିବାରୁ ମୋର ମୃତ୍ୟୁ ଘଟିଛି; କିନ୍ତୁ ଏହା ସମ୍ପୂର୍ଣ୍ଣ ମିଥ୍ୟା । ଯେଉଁ ସର୍ପ ମୋର ମୃତ୍ୟୁ ଘଟାଇଛି, ସେ ଏବେ ରାଜମୁକୁଟ ପିନ୍ଧି ସିଂହାସନରେ ବସିଛି । ମୋର ଅନୁରୋଧ, ଏହି ସର୍ପକୁ ବିନାଶ କରି ତୋର ପିତୃହତ୍ୟାର ପ୍ରତିଶୋଧ ନେବୁ । ମୋତେ ହତ୍ୟା କରିବା ପାପରେ ଅନ୍ୟ ଜଣେ ମଧ୍ୟ ଭାଗୀ । ସେ ହେଉଛି ତୋର ମାତା; କିନ୍ତୁ ତାକୁ ବଧ କରିବୁ ନାହିଁ । ଦୁଃଖ ଓ ଅନୁତାପ ହିଁ ତାର ଉପଯୁକ୍ତ ଦଣ୍ଡ ହେବ ।"

ଏପରି କହି ଭୂତଟି ଉଭେଇଗଲା ।

ହାମଲେଟ୍ ହୋରେସିଓ ଏବଂ ସୈନିକଙ୍କ ନିକଟକୁ ଫେରିଆସି ଉଭୟଙ୍କୁ କହିଲେ ଯେ ଏହି ରାତିର ଘଟଣା ବିଷୟରେ ଯେପରି ଅନ୍ୟ କେହି କିଛି ଜାଣିନପାରେ । କେବଳ ନିଜର ଅନ୍ତରଙ୍ଗ ବନ୍ଧୁ ହୋରେସିଓଙ୍କ ନିକଟରେ ସେ ଭୂତ ଯାହା କହିଥିଲା, ତାହା ଗୋପନରେ ପ୍ରକାଶ କଲେ । ସେହି ଦିନଠାରୁ ହାମଲେଟ୍ ସ୍ଥିର କଲେ ଯେ ଏଣିକି ସେ ପାଗଳ ହୋଇଯାଇଛନ୍ତି ବୋଲି ଛଳନା କରିବେ । ତାହା ହେଲେ କ୍ଲଡ଼ିଅସ୍ ତାଙ୍କୁ ଆଉ ସନ୍ଦେହ କରିବେ ନାହିଁ ଏବଂ ସେ ତାଙ୍କର ପ୍ରକୃତ ମନୋଭାବ ଲୁଚାଇ ରଖିପାରିବେ । ତାଙ୍କର ଏହି ବିଚାର ସେ କେବଳ ହୋରେସିଓଙ୍କୁ ଜଣାଇଲେ ।

ଏଣିକି ହାମଲେଟ୍‌ଙ୍କ ବେଶଭୂଷା, କଥାବାର୍ତ୍ତା ଓ ଆଚାର-ବ୍ୟବହାରରେ ଘୋର ପରିବର୍ତ୍ତନ ଦେଖାଗଲା । ବିଶେଷତଃ ରାଜା କ୍ଲଡିଅସ ଓ ରାଣୀଙ୍କ ପାଖରେ ସେ ବିଚିତ୍ର ବ୍ୟବହାର ଦେଖାଇଲେ । ସହଜେ ପିତାଙ୍କ ମୃତ୍ୟୁ ପରେ ହାମଲେଟ୍‌ଙ୍କ ଆଚରଣରେ ଅନେକ ପରିବର୍ତ୍ତନ ଘଟିଥିଲା । ରାଜା ଓ ରାଣୀ ମନେ କରିଥିଲେ ଯେ କିଛିଦିନ ପରେ ସେ ପିତାଙ୍କ ମୃତ୍ୟୁକଥା ଭୁଲିଯିବେ ଓ ସ୍ୱାଭାବିକ ଅବସ୍ଥାକୁ

ଫେରିଆସିବେ । ମାତ୍ର ସମୟର ଗତି ସଙ୍ଗେ ତାଙ୍କର ମନୋବିକାର ବୃଦ୍ଧି ପାଇବାର ଦେଖି ସେମାନେ ବିସ୍ମିତ ହେଲେ । ତଥାପି ପିତାଙ୍କ ମୃତ୍ୟୁ ବିଷୟରେ ହାମଲେଟ୍ ସେମାନଙ୍କୁ ସନ୍ଦେହ କରନ୍ତି ବୋଲି ସେମାନଙ୍କର ଧାରଣା ହୋଇ ନ ଥିଲା । ତାଙ୍କ ମନୋବିକାରର କାରଣ କେବଳ ପିତାଙ୍କ ମୃତ୍ୟୁ ନୁହେଁ ବୋଲି ସେମାନେ ବିଶ୍ୱାସ କଲେ । ଏହି ଅନ୍ୟ କାରଣଟି କଅଣ ହୋଇପାରେ, ତାହା ସେମାନେ ଅନୁମାନ କରିବାକୁ ଲାଗିଲେ ।

ରାଜପରିଷଦରେ ପଲନିଅସ୍ ନାମରେ ଜଣେ ବୃଦ୍ଧ ଓ ବିଜ୍ଞ ମନ୍ତ୍ରୀ ଥିଲେ । ଏହି ମନ୍ତ୍ରୀଙ୍କର ଗୋଟିଏ ପରମାସୁନ୍ଦରୀ ଓ ଗୁଣବତୀ କନ୍ୟା ଥିଲା । ତାହାର ନାମ ଅଫେଲିଆ । ପିତାଙ୍କ ମୃତ୍ୟୁ ପୂର୍ବରୁ ହାମଲେଟ୍ ଅଫେଲିଆ ପ୍ରତି ବିଶେଷ ଆଦର ପ୍ରକାଶ କରୁଥିଲେ । ଉଭୟେ ଅନେକ ସମୟ ଏକତ୍ର କଟାଉଥିଲେ । ପଲନିଅସ୍ ପ୍ରକାରାନ୍ତରେ ଉଭୟଙ୍କର ଏହି ମିଳନକୁ ଉତ୍ସାହିତ କରୁଥିଲେ । ଏପରି କରିବା ସ୍ୱାଭାବିକ । ପଲନିଅସ୍ ଆଶା କରିଥିଲେ ଯେ ହାମଲେଟ ଅଫେଲିଆକୁ ବିବାହ କଲେ ଦିନେ ତାଙ୍କର ଝିଅ ଡେନମାର୍କର ଯୁବରାଣୀ ହୋଇପାରିବ ।

ପଲନିଅସ୍ ବଡ଼ ଚତୁର ଲୋକ । ସେ ହାମଲେଟଙ୍କୁ ପୂରା ବିଶ୍ୱାସ କରୁନଥିଲେ । ବେଳେବେଳେ ତାଙ୍କର ସନ୍ଦେହ ହେଉଥିଲା ଯେ ହୁଏତ ଅଫେଲିଆ ପ୍ରତି ହାମଲେଟ୍ଙ୍କର ପ୍ରେମ ସେପରି ଦୃଢ଼ ନୁହେ ଓ ସେ ତାକୁ ବିବାହ ନ କରି ପାରନ୍ତି । ତେଣୁ ସେ ଝିଅକୁ କହୁଥିଲେ—ହାମଲେଟ୍ ରାଜପୁତ୍ର । ତାଙ୍କୁ ପୂରା ବିଶ୍ୱାସ କରିବା ଠିକ୍ ନୁହେଁ । ତୋ ପ୍ରତି ତାଙ୍କର ଆସକ୍ତିକୁ ଦୃଢ଼ କରିବାର ଉପାୟ ହେଉଛି, ବେଳେବେଳେ ତାଙ୍କ ପ୍ରତି ତୋର ଅନୁରାଗ ନାହିଁ ବୋଲି ଛଳନା କରିବା । ତାହା ହେଲେ ସେ ତୋ ପ୍ରତି ଆହୁରି ଆକୃଷ୍ଟ

ହେବେ । ପ୍ରେମ ଯଦି ଶୀଘ୍ର ଓ ସହଜରେ ପ୍ରକାଶ ପାଏ, ତେବେ ତାହା ଶୀଘ୍ର ମଉଳିଯାଏ । ସମ୍ପୂର୍ଣ୍ଣ ସମୟରେ ତୁ ତାହାଙ୍କ ପ୍ରତି ବିରାଗ ଦେଖାଇଲେ ସେ ସମ୍ପୂର୍ଣ୍ଣରୂପେ ତୋର ବଶୀଭୂତ ହୋଇପଡ଼ିବେ ।

ଅଫେଲିଆ ତାର ବାପାଙ୍କ କଥାରେ ବିଶ୍ୱାସ କରୁଥିଲା । ତେଣୁ ସେ କେବେ କେବେ ହାମଲେଟ୍‌ଙ୍କ ପ୍ରତି ବିରାଗ ପ୍ରଦର୍ଶନ କରେ । ଏହା ଫଳରେ ହାମଲେଟ୍ ଅଫେଲିଆ ପ୍ରତି ଆହୁରି ବେଶି ଆକୃଷ୍ଟ ହେଉଥିଲେ ।

ହାମଲେଟ ତା ପ୍ରତି କିପରି ବ୍ୟବହାର କରୁଥିଲେ, ସେ କଥା ଅଫେଲିଆ ତା ପିତାଙ୍କ ନିକଟରେ ଜଣାଉଥିଲା । ଅଫେଲିଆ କହିଲା ପ୍ରକାଶ କଲେ ହାମଲେଟ୍ ଆଉ ନିଜର ବେଶଭୂଷା ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ । ତାଙ୍କ ମୁଖମଣ୍ଡଳରେ ବିଷାଦର ଛାୟା ଦେଖାଯାଉଥିଲା । ଏଥିରୁ ପଲୋନିଅସ୍ ବୁଝିଲେ ଯେ ହାମଲେଟ୍ ପ୍ରକୃତରେ ତାଙ୍କ କନ୍ୟାକୁ ପାଇବା ପାଇଁ ବ୍ୟାକୁଳ ଏବଂ ହାମଲେଟ୍ ଅଫେଲିଆଠାରୁ ତାଙ୍କ ପ୍ରେମର ପ୍ରତିଦାନ ପାଇ ନ ପାରି ଏପରି ପାଗଳ ହୋଇଯାଇଅଛନ୍ତି । ସେ ଏହି କଥା ଅଫେଲିଆ ତଥା ରାଜା ଓ ରାଣୀଙ୍କ ନିକଟରେ ପ୍ରକାଶ କଲେ । ତାଙ୍କର ଆଶା ଥିଲା ଯେ ରାଜା ଓ ରାଣୀ ଏହା ଜାଣିଲେ ଅତି ଶୀଘ୍ର ହାମଲେଟଙ୍କୁ ସୁସ୍ଥ କରିବା ପାଇଁ ତାଙ୍କ ସହିତ ଅଫେଲିଆର ବିବାହ କରାଇଦେବେ ।

ଏଣେ ହାମଲେଟ ପାଗଳପରି ବ୍ୟବହାର ଦେଖାଇବା ସଙ୍ଗେ ସଙ୍ଗେ ପ୍ରତିହିଂସା ନେବାର ଉପାୟ ଚିନ୍ତା କରୁଥିଲେ । ସେ କ୍ଲଡ଼ିଅସ୍‌ଙ୍କୁ ଘୃଣା କରୁଥିଲେ ସତ୍ୟ, କିନ୍ତୁ ନିଜ ପିତୃବ୍ୟଙ୍କର ଜୀବନ ନେବା ତ ଦୂରର କଥା, ଜଣେ ଅପରିଚିତ ବ୍ୟକ୍ତିକୁ ବଧ କରିବା ମଧ୍ୟ ତାଙ୍କ ଧାରଣାର ଅତୀତ ଥିଲା । ସମୟ ସମୟରେ ସେ ଅଫେଲିଆ ନିକଟକୁ ଯାଇ ନିଜ ମନୋଦୁଃଖ ଲାଘବ କରିବାକୁ ଚେଷ୍ଟା କରୁଥିଲେ । ।

ଦୁଃଖର ପ୍ରକୃତ କାରଣ ତାହା ନିକଟରେ ପ୍ରକାଶ କରି ପାରୁ ନ ଥିଲେ ।

ଏଣେ ହାମଲେଟ୍ ଅଫେଲିଆ ନିକଟକୁ ଖଣ୍ଡିଏ ପତ୍ର ପଠାଇଲେ । ସେଥିରେ ସେ ଅଫେଲିଆ ପ୍ରତି ନିଜର ଗଭୀର ପ୍ରେମ ବିଷୟ ବର୍ଣ୍ଣନା କରିଥିଲେ । ଅଫେଲିଆ ଏହି ପ୍ରେମ ପତ୍ରଟି ନେଇ ତାର ବାପାଙ୍କୁ ଦେଲା । ପଲୋନିଅସ ପତ୍ରଟିକୁ ରାଜା ଓ ରାଣୀଙ୍କ ନିକଟରେ ପାଠକରି ବୁଝାଇ ଦେଲେ ଯେ ହାମଲେଟ୍ଙ୍କ ମନୋବିକାରର ପ୍ରକୃତ କାରଣ ହେଉଛି ପ୍ରେମ, ଅନ୍ୟ କିଛି ନୁହେଁ ।

ଯେଉଁମାନେ ହାମଲେଟ୍ଙ୍କୁ ପ୍ରକୃତ କଥା ଲୁଚାଇବାକୁ ବସିଥିଲେ, ଏବେ ସେଇମାନେ ହାମଲେଟ୍ଙ୍କର ପ୍ରକୃତ ଉଦ୍ଦେଶ୍ୟ ବୁଝି ପାରିଲେ ନାହିଁ । ତଥାପି ହାମଲେଟ୍ଙ୍କ ମନରେ ଆଦୌ ସୁଖ ନ ଥିଲା । ଭୂତର କଥା ଯେ ସତ୍ୟ ଏଥିରେ ତାଙ୍କର ଦୃଢ଼ ବିଶ୍ୱାସ ଆସୁ ନ ଥିଲା । ପୁଣି ଭୂତର କଥା ସତ୍ୟ ହୋଇଥିଲେ ମଧ୍ୟ ନିଜ ମାଆଙ୍କର ସ୍ୱାମୀଙ୍କୁ ସେ କିପରି ହତ୍ୟା କରିବେ ? ଏଣେ ପିତୃହତ୍ୟାର ପ୍ରତିଶୋଧ ନେବାକୁ ସେ ଉଦ୍ୟମ ନ କରି ବିଳମ୍ବ କରୁଥିବାରୁ ନିଜକୁ ଅପରାଧୀ ମନେ କରୁଥିଲେ । ଯେଉଁ ପ୍ରେତାତ୍ମା ତାଙ୍କୁ ପ୍ରତିହିଂସା ନେବାକୁ କହିଲା ସେ ଯେ ତାଙ୍କ ସ୍ୱର୍ଗୀୟ ପିତାଙ୍କର ଏହା କିପରି ନିଶ୍ଚିତ ରୂପେ ଜଣାଯିବ ? ହୁଏତ ଏହା କୌଣସି ଦୁଷ୍ଟ ଭୂତ ହୋଇପାରେ ! ହାମଲେଟ୍ଙ୍କୁ ପାପକାର୍ଯ୍ୟରେ ଲିପ୍ତ କରିବା ଉଦ୍ଦେଶ୍ୟରେ ତାଙ୍କ ପିତାଙ୍କର ଆକାର ଧାରଣ କରି ଆସି ଥାଇପାରେ । ପ୍ରେତାତ୍ମାମାନେ ଯେ କୌଣସି ଆକାର ଧାରଣ କରି ପାରନ୍ତି । ସଂଦେହରେ ଜଣେ ରାଜାଙ୍କୁ ହତ୍ୟା କରିବା ସହଜ ବ୍ୟାପାର ନୁହେଁ । ରାଜା ପ୍ରାୟ ସର୍ବଦା ନିଜର ଶରୀରରକ୍ଷୀମାନଙ୍କ ଦ୍ୱାରା

ପରିବେଷ୍ଟିତ ହୋଇଥାନ୍ତି । ଅନ୍ୟ ସମୟରେ ରାଣୀ ତାଙ୍କ ନିକଟରେ ଥାନ୍ତି । ଏପରି ଅବସ୍ଥାରେ ତାଙ୍କୁ କିପରି ହତ୍ୟା କରାଯାଇପାରେ ?

ଏହି ସବୁ ଚିନ୍ତାରେ ହାମଲେଟ୍ ଦୋଳାୟମାନ ହେଲେ । ଜୀବନ ତାଙ୍କ ପକ୍ଷରେ ବିଷମୟ ବୋଧ ହେଲା । ଶେଷରେ ସେ ସ୍ଥିର କଲେ ଯେ ପ୍ରଥମେ ନିଶ୍ଚିତ ଭାବରେ ବୁଝିବାକୁ ହେବ — ପ୍ରକୃତରେ କ୍ଲଡ଼ିଅସ୍ ଓ ତାଙ୍କର ମାତା ଏହି ହତ୍ୟା ବ୍ୟାପାରରେ ଜଡ଼ିତ ଥିଲେ କି ନା ?

ଦୈବାତ୍ ଏହି ବିଷୟ ବୁଝିବାର ଗୋଟିଏ ସୁଯୋଗ ଉପସ୍ଥିତ ହେଲା ।

ଏହି ସମୟରେ ଗୋଟିଏ ଅଭିନେତୃଦଳ ନଗରରେ ଉପସ୍ଥିତ ହୋଇ ରାଜପ୍ରାସାଦରେ ଦିନେ ଅଭିନୟ ଦେଖାଇବାର ଇଚ୍ଛା ପ୍ରକାଶ କଲେ । ଏହି ଦଳ ଏଥିପୂର୍ବରୁ କେତେକ ଥର ରାଜ-ପ୍ରାସାଦରେ ଅଭିନୟ ଦେଖାଇଥିଲେ । ଏମାନଙ୍କର ଗୋଟିଏ ନାଟକର ଅଭିନୟ କଥା ହାମଲେଟ୍‌ଙ୍କର ମନେ ପଡ଼ିଲା । ସେହି ନାଟକର ପ୍ରଧାନ ବିଷୟ ହେଉଛି ଜଣେ ଡ୍ୟୁକ୍‌ଙ୍କର ମୃତ୍ୟୁ ଓ ସେଥି-ପାଇଁ ତାଙ୍କ ପତ୍ନୀଙ୍କର କରୁଣ ବିଳାପ । ହାମଲେଟ୍ ଭାବିଲେ ଯେ ଏହି ନାଟକର ଅଭିନୟ ଦେଖି ରାଜା ଓ ରାଣୀ ଯେଉଁ ମନୋଭାବ ପ୍ରକାଶ କରିବେ, ସେଥିରୁ ପ୍ରକୃତ ସତ୍ୟ କଥା ଜଣାପଡ଼ିଯିବ ।

ହାମଲେଟ୍ ଅଭିନେତୃଦଳର ଜଣକୁ ବିଶ୍ୱାସରେ ଡାକିନେଇ କହିଲେ, "ତୁମମାନଙ୍କର 'ଗଞ୍ଜାଗୋ ବଧ' ନାଟକଟିର ଅଭିନୟ ମୋତେ ଭଲ ଲାଗେ । ତେବେ ମୁଁ ସେଥିରେ ସାମାନ୍ୟ କେତେ-ଧାଡ଼ି ପରିବର୍ତ୍ତନ କରିଦେବି । ତୁମେମାନେ କାଲି ରାତିରେ ରାଜା ଓ ରାଣୀଙ୍କ ଆଗରେ ଏହି ନାଟକଟି ଅଭିନୟ କରିବ ।"

'ଗଞ୍ଜାଗୋ ବଧ' ନାଟକର ମୂଳ ବିଷୟ ହେଲା – ଭିଏନାରେ ଗଞ୍ଜାଗୋ ନାମକ ଜଣେ ଡଉକ୍ ଥିଲେ । ତାଙ୍କର ଜଣେ ନିକଟ-ସମ୍ପର୍କୀୟ ଲୋକ ତାଙ୍କୁ ବଗିଚାରେ ବିଷ ଦେଇ ହତ୍ୟା କଲା ଓ ତତ୍ପରେ ଡଉକଙ୍କର ବିଧବା ପତ୍ନୀଙ୍କୁ ବିବାହ କଲା ।

ହାମଲେଟ୍ ନିଜ ପିତାଙ୍କ ମୃତ୍ୟୁ ବିଷୟରେ ଯାହା ଶୁଣିଥିଲେ, ନାଟକଟି ଠିକ୍ ସେହିପରି ହେବା ପାଇଁ ସାମାନ୍ୟ ପରିବର୍ତ୍ତନ କରିଦେଲେ ।

ହାମଲେଟ୍ ଭାବିଲେ ଯେ ଯଦି ପ୍ରକୃତରେ ରାଜା ଓ ରାଣୀ ତାଙ୍କ ପିତାଙ୍କ ହତ୍ୟାର କାରଣ ହୋଇଥାନ୍ତି,ତେବେ ଏହି ଅଭିନୟ ଦେଖିଲେ ସେମାନଙ୍କର ମୁଖ ଭଙ୍ଗୀରୁ ପ୍ରକୃତ କଥା ଜଣାପଡ଼ିଯିବ । ଏହିପରି ବନ୍ଦୋବସ୍ତ କରି ହାମଲେଟ୍ ରାଜା କ୍ଲଡିଅସ୍ ଓ ନିଜ ମାତାଙ୍କୁ ଅଭିନୟ ଦେଖିବାକୁ ନିମନ୍ତ୍ରଣ ଜଣାଇଲେ । ସେମାନେ ଭାବିଲେ ଯେ ହାମଲେଟଙ୍କର ମନର ପରିବର୍ତ୍ତନ ହେଲାଣି; ନାଟକ ଅଭିନୟ ଦେଖିବାକୁ ଇଚ୍ଛା କରୁଅଛନ୍ତି । ସେମାନେ ଆନନ୍ଦରେ ନିମନ୍ତ୍ରଣ ଗ୍ରହଣ କଲେ, ମାତ୍ର ନାଟକର ବିଷୟ ସମ୍ବନ୍ଧରେ କିଛି ପଚାରିଲେ ନାହିଁ ।

ରଙ୍ଗମଞ୍ଚର ପ୍ରଥମ ଧାଡ଼ିରେ ରାଜା ଓ ରାଣୀ ବସିଲେ । ହୋରେସିଓ ଏବଂ ହାମଲେଟ ଟିକିଏ ଦୂରରେ ଏପରି ସ୍ଥାନରେ ବସି ରହିଲେ ଯେପରି ରାଜା ଓ ରାଣୀଙ୍କର ଚେହେରା ସେମାନେ ଦେଖିପାରିବେ ।

ଯଥା ସମୟରେ ଅଭିନୟ ଆରମ୍ଭ ହେଲା । ରଙ୍ଗମଞ୍ଚରେ ପ୍ରଥମ ଦୃଶ୍ୟରେ ଗଞ୍ଜାଗୋ ଓ ତାଙ୍କ ସ୍ତ୍ରୀଙ୍କ ମଧ୍ୟରେ କଥାବାର୍ତ୍ତା ପ୍ରସଙ୍ଗରେ ସ୍ତ୍ରୀ କହିଲେ, "ଜଗତରେ ତୁମେହିଁ ମୋର ପ୍ରିୟତମ । ଯଦି ଦୁର୍ଦ୍ଦୈବରୁ ତୁମେ ଆଗେ ପ୍ରାଣତ୍ୟାଗ କର ତେବେ ମୁଁ ଚିରଜୀବନ ବୈଧବ୍ୟବ୍ରତ ଅବଲମ୍ବନ କରିବି । କଦାପି ଅନ୍ୟ ପତି ଗ୍ରହଣ କରିବି

ନାହିଁ । ଯେଉଁ ନାରୀମାନେ ଦ୍ୱିତୀୟବାର ବିବାହ କରନ୍ତି, ସେମାନେ ନିଜର ପ୍ରଥମ ପତିର ହତ୍ୟାକାରିଣୀ ।" ଏହି ଅଭିନୟ ହେଉଥିବା ବେଳେ ହ୍ୟାମଲେଟ ଲକ୍ଷ୍ୟ କଲେ ଯେ ତାଙ୍କ ମାଆଙ୍କ ମୁହଁ ବିବର୍ଣ୍ଣ ହୋଇଗଲା । ପରବର୍ତ୍ତୀ ଦୃଶ୍ୟରେ ଗୋଟିଏ ଉପବନ ମଧ୍ୟରେ ଡିଉକ୍ ଗଞ୍ଜାଗୋ ଶାୟିତ ଥିଲେ । ଜଣେ ଲୋକ ଆସି ତାଙ୍କ କାନରେ କିଛି ବିଷାକ୍ତ ଔଷଧ ଢାଳି ଦେବାର ଦେଖାଗଲା । ରଙ୍ଗମଞ୍ଚର ଏହି ଦୃଶ୍ୟ ଦେଖିଲା କ୍ଷଣି ରାଜା ଚମକି ଉଠିଲେ । ହ୍ୟାମଲେଟ୍ ଏହା ଲକ୍ଷ୍ୟ କରି ରାଜାଙ୍କୁ କହିଲେ, "ଏ ଲୋକଟା ଡିଉକଙ୍କ ଜମିଦାରୀ ପାଇବା ଲୋଭରେ ତାଙ୍କୁ ହତ୍ୟା କରୁଛି । ପରବର୍ତ୍ତୀ ଦୃଶ୍ୟରେ ଦେଖିବେ ଯେ ଗଞ୍ଜାଗୋଙ୍କ ବିଧବା ପତ୍ନୀକୁ ସେ ବିବାହ କରିବ ।"

ରାଜା କ୍ଲଡିଅସ୍ ଦେଖିଲେ ଯେ ତାଙ୍କର ଅପକର୍ମଗୁଡ଼ିକ ରଙ୍ଗମଞ୍ଚରେ ଅଭିନୀତ ହେଉଛି । ତାଙ୍କର ମୁହଁ କଳା ପଡ଼ିଗଲା । ଭୟରେ ସେ ଥରି ଉଠିଲେ । ଅଭିନୟ ଦେଖିବାକୁ ଆଉ ରହିବା ଅସମ୍ଭବ ମନେ କରି ସେ ହଠାତ୍ ରାଣୀଙ୍କ ସଙ୍ଗେ ଚାଲିଗଲେ । ପାରିଷଦମାନେ ରାଜା ଓ ରାଣୀଙ୍କର ଏପରି ହଠାତ୍ ଚାଲିଯିବାରେ ବିସ୍ମୟ ପ୍ରକାଶ କଲେ । କିନ୍ତୁ ହ୍ୟାମଲେଟ୍ ଓ ହୋରେସିଓ ଯାହା ଦେଖିଲେ ସେଥିରେ ସେମାନଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ ଭୂତ ଯାହା କହିଥିଲା, ତାହା ଅକ୍ଷରେ ଅକ୍ଷରେ ସତ୍ୟ ।

ଏବେ ହ୍ୟାମଲେଟ ପ୍ରତିଜ୍ଞା କଲେ ଯେ ନିଜ ପିତାଙ୍କ ହତ୍ୟାର ପ୍ରତିଶୋଧ ନେବାକୁ ହେବ । ଏହି ସମୟରେ ରାଣୀ ହ୍ୟାମଲେଟ୍‌ଙ୍କ ସଙ୍ଗରେ କିଛି ଗୋପନୀୟ କଥାବାର୍ତ୍ତା ହେବାପାଇଁ ତାଙ୍କୁ ଡକାଇ ପଠାଇଲେ ।

ରାଣୀ ରାଜାଙ୍କ ପରାମର୍ଶ ଅନୁସାରେ ହାମଲେଟ୍‌ଙ୍କୁ ଡକାଇଥିଲେ । ହାମଲେଟ୍ ଜାଣିଶୁଣି ଏହି ଅଭିନୟର ବ୍ୟବସ୍ଥା କରିଥିଲେ କି ଦେଇବାର ଅଭିନେତାମାନେ ଏପରି ଗୋଟିଏ ବିଷୟର ଅଭିନୟ କରିଥିଲେ, ତାହା ଜାଣିବା ରାଜାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ ଏଥି ମଧ୍ୟରେ ସେ ଯେତିକି ଅଭିନୟ ଦେଖିଥିଲେ ସେତିକିରୁ ନିଜର ପାପ ଉତ୍ତମରୂପେ ବୁଝିପାରିଥିଲେ । ମନୋଦୁଃଖରେ ସେ ଜାନୁପାତ କରି ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । ହାମଲେଟ୍ ମାଆଙ୍କ ପାଖକୁ ଗଲାବେଳେ ରାଜାଙ୍କୁ ଏହିପରି ଅବସ୍ଥାରେ ଦେଖିଲେ । ଇଚ୍ଛା କରିଥିଲେ ସେ ଅନେକ୍ଷଣରେ ରାଜାଙ୍କୁ ହତ୍ୟା କରି ପିତୃହତ୍ୟାର ପ୍ରତିଶୋଧ ନେଇ ପାରିଥାନ୍ତେ । ମାତ୍ର ସେ ତାହା କରି ପାରିଲେ ନାହିଁ ।

ଏଣେ ରାଣୀ ପଲୋନିଅସଙ୍କୁ ଡାକି ପରଦା ପଛରେ ଲୁଚି ରହି ହାମଲେଟଙ୍କର ସବୁ କଥା ଶୁଣିବାକୁ କହିଥିଲେ । ହାମଲେଟ୍ ଘର ଭିତରେ ପ୍ରବେଶ କଲେ । ପଲୋନିଅସ୍ ପରଦା ପଛରେ ଲୁଚି ରହିଥାନ୍ତି । ପ୍ରଥମେ ରାଣୀ ହାମଲେଟ୍‌ଙ୍କ ଆଚରଣରେ ବିରକ୍ତି ପ୍ରକାଶ କରି କହିଲେ, "ଏ ପ୍ରକାର ବ୍ୟବହାର ଦେଖାଇ ତୁମର ପିତାଙ୍କୁ ଏଭଳି ଅପମାନିତ କଲ କାହିଁକି ?" ଏହା ଶୁଣିଲା କ୍ଷଣି ହାମଲେଟ୍ ନିଜର ସ୍ୱର୍ଗତ ପିତାଙ୍କ କଥା ସ୍ମରଣ କରି କହିଲେ, "ନା, ମାଆ, ମୁଁ ପିତାଙ୍କର ଅପମାନ କରିନାହିଁ, ବରଂ ତୁମେ ମୋର ପିତାଙ୍କ ପ୍ରତି ଘୋର ଅପମାନ କରିଅଛ ।" ରାଣୀ କହିଲେ, "ଏ କଅଣ ମୋ କଥାର ଉପଯୁକ୍ତ ଉତ୍ତର ?" ହାମଲେଟ୍ ଉତ୍ତର କଲେ "ଏହାହିଁ ତୁମ ପ୍ରଶ୍ନର ଉପଯୁକ୍ତ ଉତ୍ତର ।" ଅବଶ୍ୟ ନିଜର ମାଆଙ୍କୁ ହତ୍ୟା କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା; କିନ୍ତୁ ସେ ନିଜର ଦୋଷ ସ୍ୱୀକାର କରନ୍ତୁ, ଏହା ତାଙ୍କର ଇଚ୍ଛା ଥିଲା । ସେ ମାଆଙ୍କର ହାତକୁ ଜୋର୍‌ରେ ଧରି କହିଲେ, "ଚାଲି ଯାଉଛ କୁଆଡ଼େ ? ଏଇ

ତଉକରେ ବସ ।" ଉପରେ ରାଣୀ ଚକ୍ରାର କଲେ, "ଏ କଅଣ ? ମୋତେ ମାରି ପକାଇବ ନା କଅଣ ? କଏ ଅଛ ଧାଇଁଆସ ।"

ଏଣେ ପଲୋନିଅସ୍ ପର୍ଦ୍ଦା ପଛରେ ଉକ୍ତ ସବୁ ଶୁଣୁଥିଲେ । ସେ ଭାବିଲେ ଯେ ହ୍ୟାମଲେଟ୍ ନିଜର ମାଆଙ୍କୁ ହତ୍ୟା କରିବାକୁ ବସିଛନ୍ତି । ତେଣୁ ସେ ପାଟି କଲେ, "କଏ ଅଛ, ଧାଇଁ ଆସ ।" ହ୍ୟାମଲେଟ୍ ମନେ କଲେ ଯେ ଏହି ଲୋକଟି ରାଜାଙ୍କ ଛଡ଼ା ଆଉ କେହି ନୁହେଁ । ତାଙ୍କର ପ୍ରାଣ ନେବାକୁ ସେ ଆଗରୁ ସ୍ଥିର କରିଥିଲେ । ତେଣୁ ପର୍ଦ୍ଦାର ଯେଉଁ ଅଂଶରୁ ଶବ୍ଦ ଶୁଣାଯାଉଥିଲା, ସେହି ସ୍ଥାନରେ ନିଜର ଖଣ୍ଡାଟି ଭୁଷିଦେଲେ । ବୃଦ୍ଧ ପଲୋନିଅସ୍ ସେହିଠାରେ ପଡ଼ି ପ୍ରାଣତ୍ୟାଗ କଲେ । ହ୍ୟାମଲେଟ୍ ଆସି ଦେଖିଲେ ଯେ ସେ ପ୍ରକୃତରେ ପଲୋନିଅସ୍‌ଙ୍କୁ ହତ୍ୟା କରିଅଛନ୍ତି । ରାଣୀ ଚିତ୍କାର କଲେ, "ହ୍ୟାମଲେଟ୍, ତୁମେ କି ଘୋର ପାପ କର୍ମ କଲ ?" ହ୍ୟାମଲେଟ୍ ଉତ୍ତର କଲେ, "ମୁଁ ପାପ କର୍ମ କରିପାରିଥାଏଁ, କିନ୍ତୁ ତୁମେ ଯେ ତୁମର ସ୍ୱାମୀ, ଦେଶର ରାଜାଙ୍କୁ ହତ୍ୟା କରି ତାଙ୍କର ଭାଇଙ୍କୁ ବିବାହ କରିଛ । ମୋ ପାପ ତୁମ ପାପ ତୁଳନାରେ ବେଶି ନୁହେଁ ।"

ହ୍ୟାମଲେଟ୍ ମାଆଙ୍କୁ ପୁଣି ଭର୍ତ୍ସନା କରି କହିଲେ, "ତୁମର କି କଠୋର ହୃଦୟ ! ଏତେ ଶୀଘ୍ର ତୁମର ସ୍ୱର୍ଗତ ସ୍ୱାମୀଙ୍କୁ ଭୁଲି ଯାଇ ସେହି ସ୍ୱାମୀଙ୍କର ହତ୍ୟାକାରୀକୁ ବିବାହ କଲ କପରି ? ତୁମର ପ୍ରଥମ ସ୍ୱାମୀ ସ୍ୱର୍ଗର ଦେବତା ହେଲେ, ଦ୍ୱିତୀୟ ସ୍ୱାମୀ ହେଉଛି ନରକର କୀଟ । ବୋଧହୁଏ କୌଣସି ପିଶାଚ ତୁମକୁ ଏପରି କୁକର୍ମରେ ପ୍ରବୃତ୍ତ କଲା । ତୁମର ପାପ କଥା ଶୁଣିଲେ ଲୋକେ କାନରେ ହାତ ଦେବେ ।"

ଏହା ଶୁଣି ରାଣୀ ନିଜର ପାପ କର୍ମରେ ଲଜ୍ଜିତା ହୋଇ କହିଲେ, "ହାମଲେଟ, ଆଉ କିଛି କହନାହିଁ ।" ମାତ୍ର ହାମଲେଟ୍ କହିଲେ, "ଯଦି ତୁମେ ଅନୁତାପ କରୁଥାଅ, ତେବେ ଏହି ଦୁଷ୍ଟ ଲୋକର ସଂସର୍ଗ ତ୍ୟାଗକର ।" ଠିକ୍ ଏହି ସମୟରେ ହାମଲେଟ୍ ନିଜର ପିତାଙ୍କ ପ୍ରେତାତ୍ମାକୁ ଦେଖିବାକୁ ପାଇଲେ । ପ୍ରେତାତ୍ମା ହାମଲେଟ୍‌ଙ୍କୁ କହିଲା, "ବତ୍ସ, ତୋର ମାତାକୁ ଆଉ କିଛି କହିବା ବର୍ତ୍ତମାନ ଅନାବଶ୍ୟକ । ତୁ ଯେ ଏ ପର୍ଯ୍ୟନ୍ତ ମୋ ହତ୍ୟାର ପ୍ରତିଶୋଧ ନେଇନାହୁଁ !" ରାଣୀ ପ୍ରେତାତ୍ମାକୁ ଦେଖି ପାରୁ ନ ଥିଲେ । ସେ ଭାବିଲେ ଯେ ହାମଲେଟ୍‌ଙ୍କର ମସ୍ତିଷ୍କବିକୃତି ପୁଣି ଦେଖାଦେଇଛି । ତା ହୋଇ ନ ଥିଲେ ସେ ଶୂନ୍ୟକୁ ଚାହିଁ କଥାବାର୍ତ୍ତା କରୁଥାନ୍ତେ କାହିଁକି ?"

ହାମଲେଟ୍ ମାଆଙ୍କୁ କହିଲେ, "ପାପରୁ ମୁକ୍ତି ପାଇବାପାଇଁ ଭଗବାନଙ୍କୁ ପ୍ରାର୍ଥନା କର, ଆଉ ଏ ଦୁଷ୍ଟ ଲୋକର ସଙ୍ଗ ତ୍ୟାଗକର ।"

ଏଥିମଧ୍ୟରେ ରାଜା କ୍ଲଡିଅସ୍ ଦେଖିଲେ ଯେ ହାମଲେଟ୍ ତାଙ୍କ ପକ୍ଷରେ ବିପଦର କାରଣ । ସେ ମନେ ମନେ ହାମଲେଟ୍‌ଙ୍କୁ ଭୟ ମଧ୍ୟ କରୁଥିଲେ । ତେଣୁ ତାଙ୍କୁ ଦେଶରୁ ବିତାଡ଼ିତ କରିବା ତାଙ୍କର ଇଚ୍ଛାଥିଲା । କିନ୍ତୁ ଲୋକସାଧାରଣ ହାମଲେଟ୍‌ଙ୍କୁ ଏତେ ଭଲ ପାଉଥିଲେ ଯେ ଯଥେଷ୍ଟ କାରଣ ବିନା ତାଙ୍କୁ ନିର୍ବାସନ କରିବାକୁ କ୍ଲଡିଅସ୍ ସାହସ କରି ପାରୁନଥିଲେ । ଏବେ ହାମଲେଟ୍ ପଲୋନିଅସ୍‌ଙ୍କୁ ହତ୍ୟା କରିଥିବାରୁ ରାଜା ଗୋଟାଏ ବାଟ ପାଇଲେ । ହୁଏତ ପଲୋନିଅସ୍‌ଙ୍କ ଲୋକେ ହାମଲେଟ୍‌ଙ୍କର ଅନିଷ୍ଟ କରିବେ ଏହି ଭୟରେ ସେ ହାମଲେଟ୍‌ଙ୍କୁ ବିଦେଶକୁ ପଠାଉଅଛନ୍ତି ବୋଲି ଲୋକଙ୍କୁ କୁହାଯାଇପାରିବ ।

ଏଣୁ କ୍ଲଡଅସ୍ ସ୍ଥିର କଲେ ଯେ ଗୋଟାଏ ଗୁରୁତର ରାଜକାର୍ଯ୍ୟରେ ସେ ଯୁବରାଜ ହାମଲେଟ୍‌ଙ୍କୁ ନିଜ ଅଧୀନ ରାଜ୍ୟ ଇଂଲଣ୍ଡକୁ ପଠାଉଅଛନ୍ତି । ପ୍ରକୃତ ପକ୍ଷରେ ସେ ହାମଲେଟ୍‌ଙ୍କ ସହିତ ଦୁଇଜଣ ଉଚ୍ଚ ରାଜକର୍ମଚାରୀଙ୍କୁ ପଠାଇଥିଲେ ଓ ସେମାନଙ୍କ ଦ୍ୱାରା ଇଂଲଣ୍ଡର ରାଜାଙ୍କୁ ପତ୍ର ଲେଖିଥିଲେ ଯେ ହାମଲେଟ୍ ଇଂଲଣ୍ଡରେ ପହଞ୍ଚିଲା ମାତ୍ରେ ତାଙ୍କୁ ଯେପରି ହତ୍ୟା କରାଯାଏ ।

ହାମଲେଟ୍ ଅଗତ୍ୟା ସ୍ୱଦେଶ ତ୍ୟାଗ କରି ଇଂଲଣ୍ଡକୁ ଯିବାପାଇଁ କର୍ମଚାରୀଦ୍ୱୟଙ୍କ ସହିତ ଜାହାଜରେ ବସିଲେ । କିନ୍ତୁ ରାଜା କ୍ଲଡ଼ଅସ୍‌ଙ୍କର ଦୁରଭିସନ୍ଧି ପୂରଣ ହେଲା ନାହିଁ ।

ହାମଲେଟ୍ କ୍ଲଡ଼ଅସ୍‌ଙ୍କୁ ସନ୍ଦେହ କରୁଥିଲେ । ସେଥିପାଇଁ ସେ ଖୁବ୍ ସତର୍କ ରହୁଥିଲେ । ଜାହାଜ ବନ୍ଦର ଛାଡ଼ିଲା । ସେଦିନ ରାତିରେ କର୍ମଚାରୀଦ୍ୱୟ ଶୋଇଥିବା ବେଳେ ହାମଲେଟ୍ ରାଜାଙ୍କ ପତ୍ରଟି ହସ୍ତଗତ କରି ଖୋଲି ଜାଣି ପାରିଲେ ଯେ ସେ ଇଂଲଣ୍ଡରେ ପହଞ୍ଚିବା ମାତ୍ରେ ତାଙ୍କୁ ହତ୍ୟା କରାଯିବ । ସେ କୌଶଳରେ ପତ୍ରରେ ନିଜ ନାମକୁ ଲିଭାଇ ଦେଇ ସେ ସ୍ଥାନରେ ଉକ୍ତ କର୍ମଚାରୀ ଦୁହିଁଙ୍କର ନାମ ଲେଖିଦେଲେ ଓ ପତ୍ରଟିକୁ ପୁଣି ପୂର୍ବସ୍ଥାନରେ ରଖିଦେଲେ ।

ଏହି ଘଟଣାର ପରଦିନ ଦୈବାତ୍ ଜଳଦସ୍ୟୁମାନେ ତାଙ୍କ ଜାହାଜକୁ ଆକ୍ରମଣ କଲେ । ହାମଲେଟ୍ ସାହସ ସହକାରେ ଦସ୍ୟୁମାନଙ୍କ ଜାହାଜକୁ ଡେଇଁପଡ଼ି ସେମାନଙ୍କୁ ଆକ୍ରମଣ କଲେ । ଏହି ଅବସ୍ଥାରେ ତାଙ୍କ ଜାହାଜ ହାମଲେଟ୍‌ଙ୍କୁ ଛାଡ଼ି ଚାଲିଗଲା ।

ଦସ୍ୟୁମାନେ ଜାଣିପାରିଲେ ଯେ ଏହି ସାହସୀ ଯୁବକ ହେଉଛନ୍ତି ଡେନମାର୍କର ଯୁବରାଜ ହାମଲେଟ୍ । ତେଣୁ ସେମାନେ ତାଙ୍କ ପ୍ରତି ସମ୍ମାନପୂର୍ଣ୍ଣ ବ୍ୟବହାର ଦେଖାଇଲେ ଏବଂ ଡେନମାର୍କର ଗୋଟିଏ ବନ୍ଦରରେ ତାଙ୍କୁ ଓହ୍ଲାଇ ଦେଲେ ।

ସେ ସେଠାରୁ ରାଜାଙ୍କୁ ଖଣ୍ଡିଏ ପତ୍ର ଲେଖିଲେ ଯେ ସେ ଘଟନାକ୍ରମେ ଡେନମାର୍କଫେରି ଆସିଅଛନ୍ତି ଓ ପରଦିନ ରାଜଧାନୀରେ ପହଞ୍ଚି ସମସ୍ତ ଘଟନା ପ୍ରକାଶ କରିବେ ।

ଏଥିମଧ୍ୟରେ ହ୍ୟାମଲେଟ୍ ସମସ୍ତ ଘଟନା ଜଣେ ବିଶ୍ୱାସୀ ଲୋକଦ୍ୱାରା ହୋରେସିଓଙ୍କୁ ଜଣାଇ ତାଙ୍କୁ ଡକାଇ ପଠାଇଲେ । ହୋରେସିଓ ଉକ୍ତ ବନ୍ଦରରେ ପହଞ୍ଚିବାରୁ ହ୍ୟାମଲେଟ୍ ତାଙ୍କୁ ରାଜାଙ୍କର ଷଡ଼ଯନ୍ତ୍ର, ଜଳଦସ୍ୟୁମାନଙ୍କର ଆକ୍ରମଣ ଆଦି ବିଷୟ କହିଲେ । ଦୁଇବନ୍ଧୁ ରାଜଧାନୀଅଭିମୁଖରେ ଚାଲିଲେ । ରାଜଧାନୀର ନିକଟବର୍ତ୍ତୀ ହେଲା ବେଳକୁ ସେମାନେ ଦେଖିଲେ ଯେ ଗୋଟିଏ କବର ଖୋଳା ହେଉଛି । ଅନୁସନ୍ଧାନରୁ ଜଣାଗଲା ଯେ ନଗରର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ କନ୍ୟାର ମୃତ୍ୟୁ ହୋଇଅଛି ଓ ତାହାର ସମାଧିପାଇଁ ଉକ୍ତ ଗର୍ତ୍ତଟି ଖୋଳାଯାଉଅଛି । ଅଳ୍ପ ସମୟ ମଧ୍ୟରେ ଦଳେ ଲୋକ ଶବକୁ ଘେନି ସେଠାରେ ଉପସ୍ଥିତ ହେଲେ ।

ଏମାନଙ୍କ ମଧ୍ୟରେ ରାଜା କ୍ଲଡିଅସ୍, ରାଣୀ ଓ ରାଜସଭାର ସଦସ୍ୟମାନଙ୍କୁ ଦେଖି ହ୍ୟାମଲେଟ୍ ଓ ହୋରେସିଓ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେମାନେ ଲକ୍ଷ୍ୟ କଲେ ଯେ ଅଫେଲିଆଙ୍କ ଭାଇ ଲଏଟିସ ଏମାନଙ୍କ ମଧ୍ୟରେ ବିଶେଷ ଭାବରେ କାନ୍ଦୁଅଛନ୍ତି । ବନ୍ଧୁଦ୍ୱୟ ଲୁଚିରହି ଏସବୁ ଦେଖୁଥିଲେ । ପୁରୋହିତ ସମାଧି ନିକଟକୁ ଯାଇ ମନ୍ତ୍ରପାଠ କଲେ । କିନ୍ତୁ ସେ ସମସ୍ତ ବିଧି ପାଳନ ନ କରି କହିଲେ ଯେ ଏହି ରମଣୀ ଆତ୍ମହତ୍ୟା କରିଥିବାରୁ ସେ କର୍ମର କେତେକ ଅଂଶ ଛାଡ଼ି ଦେଉ ଅଛନ୍ତି । ଲଏଟିସ୍ ଏଥିରେ କ୍ରୁଦ୍ଧହୋଇ ପୁରୋହିତଙ୍କୁ ଭର୍ତ୍ସନା କଲେ । ଏହି ସମୟରେ ରାଣୀ ସମାଧି ମଧ୍ୟକୁ କେତେକ ଫୁଲ ପକାଇ ଦେଇ କହିଲେ, "ମୁଁ ଆଶା କରିଥିଲି ଯେ ହ୍ୟାମଲେଟ୍ ସହିତ ତୁମର

ବିବାହ ବେଳେ ତୁମକୁ ପୁଷ୍ପହାର ଦେଇଥାନ୍ତି; କିନ୍ତୁ ଆଜ ମୋତେ ତୁମର ସମାଧିରେ ଫୁଲ ଦେବାକୁ ହେଉଛି ।" ଏହା ଶୁଣିଲା ମାତ୍ରେ ହାମଲେଟ୍ ଜାଣି ପାରିଲେ ଯେ ଏହି ଶବଟି ତାଙ୍କର ପ୍ରଣୟିନୀ ଅଫେଲିଆଙ୍କର ଏବଂ ସେ ଆତ୍ମହତ୍ୟା କରିଅଛନ୍ତି । ସେ ଦୁଃଖରେ ଅଧୀର ହୋଇ ପଡ଼ିଲେ । ଏଣେ ଅଫେଲିଆଙ୍କର ଭାଇ ଗଭୀର ଦୁଃଖରେ ସମାଧି ଗର୍ତ୍ତ ମଧ୍ୟକୁ ଡେଇଁ ପଡ଼ି କହିଲେ, "ମୋର ଏ ଜୀବନରେ ଆଉ କି ପ୍ରୟୋଜନ ?"

ଏଥିପୂର୍ବରୁ ଅଫେଲିଆ ହାମଲେଟ୍ ବାତୁଳ ପରି ବ୍ୟବହାର କରୁଥିବାର ଶୁଣି ନିତାନ୍ତ ବିଷଣ୍ଣ ହୋଇଥିଲେ । ପରେ ଯେତେବେଳେ ଜାଣିଲେ ଯେ ତାଙ୍କର ପିତା ପଲୋନିଅସ୍ ସେହି ହାମଲେଟ୍‌ଙ୍କ ଦ୍ୱାରା ନିହତ ହୋଇଅଛନ୍ତି, ସେତେବେଳେ ସେ ଆଉ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ସେ ଏକ ନଦୀଗର୍ଭକୁ ଡେଇଁ ପଡ଼ି ଆତ୍ମହତ୍ୟା କଲେ । ଏହିସବୁ ଘଟଣାରୁ ଲିଏର୍ଟିସ୍ ମନେକଲେ ଯେ ତାଙ୍କର ଭଉଣୀଙ୍କ ମୃତ୍ୟୁ ପାଇଁ ହାମଲେଟହିଁ ଦାୟୀ ।

ଲିଏର୍ଟିସ୍ ସମାଧି ଗର୍ତ୍ତ ମଧ୍ୟକୁ ଡେଇଁପଡ଼ିବାର ଦେଖି ହାମଲେଟ୍ ମଧ୍ୟ ଗଭୀର ଦୁଃଖରେ ଦଉଡ଼ିଯାଇ ସେହି ଗର୍ତ୍ତମଧ୍ୟକୁ ଡେଇଁ ପଡ଼ିଲେ । ଲିଏର୍ଟିସ୍ ନିଜର ପିତୃହନ୍ତା ହାମଲେଟ୍‌ଙ୍କୁ ଦେଖି ଆକ୍ରମଣ କରିବାକୁ ବସିଲେ ।

ଦୁଷ୍ଟ ରାଜା କ୍ଲଡ଼ିଅସ୍ ଦେଖିଲେ ଯେ ତାଙ୍କର ଷଡ଼ଯନ୍ତ୍ର ବିଫଳ ହୋଇଯାଇଅଛି । କିନ୍ତୁ ହାମଲେଟ୍‌ଙ୍କୁ ବଧ କରାଇବାର ଚେଷ୍ଟାରୁ ସେ ବିରତ ହେଲେ ନାହିଁ । ସେ ଦେଖିଲେ ଯେ ଲିଏର୍ଟିସ୍ କ୍ରୋଧରେ ହାମଲେଟ୍‌ଙ୍କୁ ଆକ୍ରମଣ କରିବାକୁ ଯାଉଅଛି । ରାଜା ଜାଣିଥିଲେ ଯେ ସେ ଦୁହେଁଯାକ ଅସିକ୍ରୀଡ଼ାରେ ନିପୁଣ । ତେଣୁ ସେ ଉଭୟଙ୍କୁ ଅସିକ୍ରୀଡ଼ା କରିବାକୁ ପ୍ରବର୍ତ୍ତାଇଲେ । ଏପରି ଯୁଦ୍ଧରେ ଖଣ୍ଡାର

ଅଗ୍ରଭାଗ ତୀକ୍ଷଣ ନଥାଏ । କିନ୍ତୁ ରାଜା ଲାଏର୍ଟିସ୍‌ଙ୍କୁ ଗୋଟିଏ ତୀକ୍ଷଣାଗ୍ର ଖଣ୍ଡା ଦେଲେ । ଆହୁରି ମଧ୍ୟ ଏହାକୁ ଏପରି ବିଷଳିପ୍ତ କରା-ଯାଇଥିଲା ଯେ ଏଥିରେ ଲବମାତ୍ର ଆଘାତ କଲେ ଆହତ ବ୍ୟକ୍ତିର ପ୍ରାଣନାଶ ନିଶ୍ଚିତ ।

ରାଜା ଉଭୟଙ୍କୁ ଅସିକ୍ରୀଡ଼ା ପାଇଁ ଆହ୍ୱାନ କଲେ । ସେ ଭାବିଥିଲେ ଯେ ଏପରି କ୍ରୀଡ଼ାରେ ହାମଲେଟ୍‌ଙ୍କର ମୃତ୍ୟୁ ହେଲେ ସମସ୍ତେ ଜାଣିବେ ଯେ ଦୈବାତ୍ ତାଙ୍କର ମୃତ୍ୟୁ ହୋଇଛି । ତଥାପି ତାଙ୍କର ମନରେ ସନ୍ଦେହ ହେଲା—କାଳେ ଲାଏର୍ଟିସ୍ ହାମଲେଟ୍‌ଙ୍କୁ ଆଦୌ ଆଘାତ କରି ପାରିବେ ନାହିଁ । ତେଣୁ ସେ କ୍ରୀଡ଼ାଭୂମିର ନିକଟରେ ଗୋଟିଏ ଟେବୁଲ ଉପରେ ଦୁଇଟି ଗିଲାସ ମଦରେ ପୂର୍ଣ୍ଣ କରି ରଖିଲେ । ସେଥିରୁ ଗୋଟିକରେ ଉତ୍କଟ ବିଷ ମିଶାଯାଇଥିଲା । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଅସିକ୍ରୀଡ଼ା ବେଳେ ସେ କୌଶଳରେ ହାମଲେଟ୍‌ଙ୍କୁ ବିଷମିଶ୍ରିତ ମଦ ପିଆଇ ଦେବେ । ତାହାହେଲେ ଲାଏର୍ଟିସ୍‌ଙ୍କ ଖଣ୍ଡାରୁ ରକ୍ଷା ପାଇଲେ ସୁଦ୍ଧା ତାଙ୍କର ମୃତ୍ୟୁ ଘଟିବ ।

ଅସିକ୍ରୀଡ଼ା ଆରମ୍ଭ ହେଲା । ପ୍ରଥମେ ପ୍ରଥମେ ହାମଲେଟ୍ ବିଜୟ ଲାଭ କଲା ପରି ଜଣାଗଲା । କିଛି ସମୟ ପାଇଁ ଅସିକ୍ରୀଡ଼ା ବନ୍ଦ ରହିଲା । ଏହି ଅବସରରେ ରାଜା ହାମଲେଟ୍‌ଙ୍କ କୃତିତ୍ୱରେ ଆନନ୍ଦ ପ୍ରକାଶ କରି କିଛି ମଦ୍ୟପାନ କଲେ; କିନ୍ତୁ ହାମଲେଟ୍ ମଦ୍ୟପାନ ନ କରି ଆଉ ଥରେ ଅସିକ୍ରୀଡ଼ା କରିବାକୁ ଇଚ୍ଛା ପ୍ରକାଶ କଲେ । ଦ୍ୱିତୀୟବାର ଅସିକ୍ରୀଡ଼ାରେ ଲାଏର୍ଟିସ୍ ଅଧିକ କୃତିତ୍ୱ ଦେଖାଇଲେ । ରାଜାଙ୍କର ଦୃଷ୍ଟି ଅସିକ୍ରୀଡ଼ା ଉପରେ ରହିଥାଏ । ସେ ଚାହିଁ ରହିଥାନ୍ତି କେତେବେଳେ ଲାଏର୍ଟିସ୍‌ଙ୍କର ଅସି ହାମଲେଟ୍‌ଙ୍କ ଶରୀରକୁ ଆଘାତ କରିବ । ତେଣୁ ଅନ୍ୟ କୌଣସି କଥା ପ୍ରତି ତାଙ୍କର ଦୃଷ୍ଟି ନଥାଏ । ଏହିମଧ୍ୟରେ ରାଣୀଙ୍କୁ ତୃଷା ହେବାରୁ ସେ ପୂର୍ଣ୍ଣ-

ଥିବା ଗିଲସଟି ନେଇ ମଦ୍ୟ ପାନକଲେ । ଏଥିରେ ଯେ ବିଷ ମିଶ୍ରିତ ହୋଇଥିଲା, ତାହା ତାଙ୍କୁ ଜଣାନଥିଲା । ଠିକ୍ ଏହି ସମୟରେ ଲଏଟିସ୍ ଗୋଟାଏ ସୁଯୋଗ ପାଇ ହାମଲେଟ୍‌ଙ୍କ ଦେହରେ ଅସିଟି ବିଦ୍ଧ କଲେ । ହାମଲେଟ୍ ଦେଖିଲେ ଯେ ଲଏଟିସ୍ ବିଶ୍ୱାସଘାତକତା କରି ଗୋଟିଏ ତୀକ୍ଷ୍ଣାଗ୍ର ଖଡ଼୍‌ଗ ବ୍ୟବହାର କରୁଥିଲେ । ସେ କ୍ରୋଧାନ୍ଧ ହୋଇ ଲଏଟିସ୍‌ଙ୍କୁ ମାଡ଼ବସିଲେ ଏବଂ ତାଙ୍କ ହାତରୁ ଖଣ୍ଡା କାଢ଼ିନେଇ ସେଥିରେ ତାଙ୍କୁ ଆଘାତ କଲେ । ଏଣେ ରାଣୀ ଯେଉଁ ବିଷାକ୍ତ ମଦ୍ୟ ପିଇଥିଲେ ତାର ଫଳ ଫଳିଲା । ରାଣୀ ଚିତ୍କାର କରିଉଠିଲେ, "ମୋତେ ବିଷ ଦିଆଯାଇଛି ।" ଅଳ୍ପ ସମୟ ମଧ୍ୟରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ହାମଲେଟ୍ ଦେଖିଲେ ଯେ ତାଙ୍କୁ ବଧ କରିବା ପାଇଁ ବିରାଟ ଷଡ଼ଯନ୍ତ୍ର ହୋଇଛି । ତେଣୁ ସେ ନିଜର ଅନୁଚରମାନଙ୍କୁ କହିଲେ "ଫାଟକ ସବୁ ବନ୍ଦକରିଦିଅ । ଯେ ବିଶ୍ୱାସଘାତକତା କରିଛି, ତାକୁ ଖୋଜି ବାହାର କରିବାକୁ ହେବ ।" ଏହି ସମୟରେ ଲଏଟିସ୍‌ଙ୍କର ମୃତ୍ୟୁ ହେଲା । ମୃତ୍ୟୁ ସମୟରେ ସେ ଏତିକି କହିଲେ, "ମୁଁ ବିଶ୍ୱାସଘାତକ; ମୋର ମୃତ୍ୟୁ ହିଁ ମୋର ଉପଯୁକ୍ତ ଦଣ୍ଡ । କିନ୍ତୁ ହାମଲେଟ୍, ତୁମର ମୃତ୍ୟୁ ମଧ୍ୟ ସନ୍ନିକଟ । ଜଗତରେ ଏପରି କୌଣସି ଔଷଧ ନାହିଁ ଯାହାକି ତୁମକୁ ମୃତ୍ୟୁ ମୁଖରୁ ରକ୍ଷା କରି ପାରିବ । ମୋତେ କ୍ଷମାକର, ହାମଲେଟ୍ । ମାତ୍ର ମନେ ରଖ, ଏ ବିଶ୍ୱାସଘାତକତାର ମୂଳକାରଣ ହେଉଛନ୍ତି ସ୍ୱୟଂ ରାଜା ।"

ଏବେ ହାମଲେଟ୍ ବୁଝିପାରିଲେ ଯେ ତାଙ୍କୁ ହତ୍ୟା କରିବା ପାଇଁ ରାଜା ଏତେ ଷଡ଼୍‌ଯନ୍ତ୍ର କରିଥିଲେ । ପ୍ରତିଶୋଧ ନେବା ଦରକାର, ମାତ୍ର ସେଥିପାଇଁ ସମୟ ଅଳ୍ପ ଅଛି । ତେଣୁ ହାମଲେଟ୍

କାଳ ବିଳମ୍ବ ନ କରି ସେହି ବିଷଳିପ୍ତ ଖଡ଼ଗରେ ରାଜାଙ୍କୁ ଆଘାତ କଲେ । ସଙ୍ଗେ ସଙ୍ଗେ ରାଜାଙ୍କର ପ୍ରାଣ ବିୟୋଗ ଘଟିଲା ।

ଏହାପରେ ସ୍ୱର୍ଗୀୟ ପିତାଙ୍କ ପ୍ରେତାତ୍ମାର ଆଦେଶ ପାଳନ କରି ହାମଲେଟ୍ ହୋରେସିଓଙ୍କୁ ଡାକି କହିଲେ, "ବନ୍ଧୁ, ମୁଁ ବର୍ତ୍ତମାନ ସ୍ୱର୍ଗପଥର ଯାତ୍ରୀ । ତୁମକୁ ମୋର ଶେଷ ଅନୁରୋଧ ଯେ ତୁମେ ମୋ ପିତାଙ୍କ ମୃତ୍ୟୁର ପ୍ରକୃତ ବିବରଣ ଓ ମୋର ପ୍ରତିହିଂସାର କାହାଣୀ ଜଗତକୁ ଜଣାଇଦେବ ।"

ହୋରେସିଓ ଦୁଃଖରେ ଏତେ ଅଭିଭୂତ ହୋଇ ପଡ଼ିଥିଲେ ଯେ, ସେ ବିଷ କ୍ତ ମଦ୍ୟ ପିଇ ଆତ୍ମହତ୍ୟା କରିବାକୁ ଯାଉଥିଲେ । କିନ୍ତୁ ହାମଲେଟ୍ ତାଙ୍କୁ ସେଥିରୁ ନିବୃତ୍ତ କରି କହିଲେ, "ତୁମେ ପ୍ରାଣ ତ୍ୟାଗ କଲେ କିଏ ପ୍ରକୃତ ସତ୍ୟ ପ୍ରକାଶ କରିବ ?" ହୋରେସିଓ ବନ୍ଧୁଙ୍କର ଅନ୍ତିମ ଅନୁରୋଧ ରକ୍ଷା କରିବାକୁ ସମ୍ମତ ହେଲେ ।

ହାମଲେଟଙ୍କ ମୁଖମଣ୍ଡଳ ଟିକିଏ ପ୍ରସନ୍ନ ଦେଖାଗଲା ଓ ମୁହୂର୍ତ୍ତିକ ମଧ୍ୟରେ ତାଙ୍କର ଅମର ଆତ୍ମା ସ୍ୱର୍ଗଧାମକୁ ଚାଲିଗଲା ।



# ଓଥେଲୋ

ପୂର୍ବକାଳରେ ଭେନିସ ଗୋଟିଏ ଐଶ୍ବର୍ଯ୍ୟଶାଳୀ ନଗରୀ ଥିଲା । ଏହାର ପ୍ରଭାବ ବହୁଦୂର ବିସ୍ତାର ଲାଭ କରିଥିଲା ଏବଂ ସାଇପ୍ରସ ଦ୍ବୀପ ଏହାର ଅଧୀନ ଥିଲା ।

ଏହି ଭେନିସ୍‌ରେ ବ୍ରାବାନ୍‌ଶିଓ ନାମକ ଜଣେ ପ୍ରସିଦ୍ଧ ବ୍ୟକ୍ତି ବାସ କରୁଥିଲେ । ସେ ଯେପରି ବିଭବଶାଳୀ ଥିଲେ, ସେହିପରି ପ୍ରତିପତ୍ତିଶାଳୀ ମଧ୍ୟ ଥିଲେ । ଭେନିସ୍‌ର ଶାସନସଭା ସିନେଟରେ ସେ ଜଣେ ବିଶିଷ୍ଟ ସଭ୍ୟ ଥିଲେ । ନଗରର ସମସ୍ତେ ତାଙ୍କୁ ବିଶେଷ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ତାଙ୍କର ଡେସ୍‌ଡେମୋନା ନାମରେ ଗୋଟିଏ ଅନିନ୍ଦ୍ୟସୁନ୍ଦରୀ କନ୍ୟା ଥିଲା । ଗୁଣରେ ମଧ୍ୟ ତାର ସମକକ୍ଷ କନ୍ୟା ଭେନିସ୍‌ରେ ଦୁର୍ଲଭ ଥିଲେ । ତେଣୁ ରାଜ୍ୟର ଅନେକ ଉଚ୍ଚ ପରିବାରର ଯୁବକ ତାଙ୍କର ପ୍ରଣୟପ୍ରାର୍ଥୀ ହୋଇଥିଲେ । କିନ୍ତୁ ସେ ଏମାନଙ୍କ ମଧ୍ୟରୁ କାହାରିକୁ ନିଜର ପତିରୂପେ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କଲେ ନାହିଁ । ତାଙ୍କର ଧାରଣା ଥିଲା ଯେ ସୁନ୍ଦର ରୂପ ଅପେକ୍ଷା ହୃଦୟର ମହତ୍ତ୍ବ, ବୀରତ୍ବ ପ୍ରଭୃତି ଗୁଣ ପୁରୁଷର ପ୍ରକୃତ ମୂଲ୍ୟ ନିର୍ଦ୍ଧାରଣ କରେ । ପରିଶେଷରେ ଡେସ୍‌ଡେମୋନା ପିତାଙ୍କ ଅଜ୍ଞାତସାରରେ ଓଥେଲୋ ନାମକ ଜଣେ କୃଷ୍ଣକାୟ ମୁର୍‌ଙ୍କୁ ବିବାହ କଲେ ।

ଓଥେଲୋ ଜଣେ କୃଷ୍ଣକାୟ ମୁର୍ ହେଲେହେଁ ଭେନିସ୍‌ରେ ତାଙ୍କର ସ୍ଥାନ ଅତି ଉଚ୍ଚ ଥିଲା । ଭେନିସର ଯୁଦ୍ଧ ବିଭାଗରେ କାର୍ଯ୍ୟ କରି ସେ ଉଚ୍ଚତମ ସ୍ଥାନ ଅଧିକାର କରିଥିଲେ ଏବଂ ତାଙ୍କର ଯୁଦ୍ଧ

କୌଶଳ ଓ ବୀରତ୍ୱ ଯୋଗୁ ଭେନିସ୍ ଗୌରବାନ୍ୱିତ ହୋଇଥିଲା । ବ୍ରାବାନଶିଓ ଅନେକ ସମୟରେ ତାଙ୍କୁ ସ୍ୱଗୃହକୁ ନିମନ୍ତ୍ରଣ କରି ତାଙ୍କଠାରୁ ବୀରତ୍ୱର କାହାଣୀ ଶୁଣୁଥିଲେ । କେତେ ଯୁଦ୍ଧରେ ସେ ଯୋଗ ଦେଇଥିଲେ, କେଉଁଠାରେ କିପରି ଶତ୍ରୁ ଦୁର୍ଗ ଅଧିକାର କରିଥିଲେ, କିପରି ଶତ୍ରୁ କବଳରୁ ରକ୍ଷା ପାଇଥିଲେ, କେତେବାର ବନ୍ଦୀ ହୋଇଥିଲେ, ଏହିସବୁ ଘଟନାର ବିଶଦ ବର୍ଣ୍ଣନା ଶୁଣି ବ୍ରାବାନ୍‌ଶିଓ ଓଥେଲୋଙ୍କୁ ପ୍ରଶଂସା କରୁଥିଲେ । ସେତେବେଳେ ଡେସ୍‌ଡେମୋନା ମଧ୍ୟ ତାହା ଶୁଣି ମୁଗ୍‌ଧ ହୋଇଯାଉଥିଲେ । କ୍ରମଶଃ ଡେସ୍‌ଡେମୋନା ଏହି ବୀର ମୁର୍‌ଙ୍କ ନିକଟରେ ନିଜର ହୃଦୟ ଅର୍ପଣ କରିଦେଲେ । ରୂପ ଓ ଦେହର ବର୍ଣ୍ଣ ଛାଡ଼ିଦେଲେ ଓଥେଲୋ ଯେ ଡେସ୍‌ଡେମୋନାଙ୍କର ଉପଯୁକ୍ତ ପତି ଏଥିରେ ସନ୍ଦେହ ନ ଥିଲା ।

ଏହି ସମୟରେ ତୁର୍କମାନେ ସାଇପ୍ରସ ଦ୍ୱୀପ ଆକ୍ରମଣ ନିମନ୍ତେ ଚେଷ୍ଟିତ ଥିବାର ସମ୍ବାଦ ମିଳିଲା । ଭେନିସ୍‌ର ଉଚ୍ଚ ସଦସ୍ୟମାନଙ୍କ ପରାମର୍ଶରେ ଓଥେଲୋଙ୍କୁ ପ୍ରଧାନ ସେନାପତି ଓ ସାଇପ୍ରସର ଶାସନକର୍ତ୍ତାରୂପେ ନିଯୁକ୍ତ କରି ପଠାଇବାକୁ ସ୍ଥିରକଲେ ।

ବ୍ରାବାନଶିଓ ଶୁଣି ପାରିଲେ ଯେ ଡେସଡେମୋନା ଓଥୋଲୋଙ୍କୁ ଗୋପନରେ ବିବାହ କରି ଗୃହରୁ ଚାଲିଯାଇଛି । ସେ ମନେକଲେ, ଡେସ୍‌ଡେମୋନା କଦାପି ସ୍ୱେଚ୍ଛାରେ ଏହି କୃଷ୍ଣକାୟ ମୁର୍‌ଙ୍କୁ ବିବାହ କରି ନଥିବ । ଓଥେଲୋ କୌଣସି ପ୍ରକାର ମନ୍ତ୍ରଯନ୍ତ୍ର ଦ୍ୱାରା ଡେସ୍‌ଡେମୋନାଙ୍କୁ ବଶୀଭୂତ କରି ନେଇଯାଇଅଛି ।

ସାଇପ୍ରସ୍‌ର ସୁରକ୍ଷା ବିଷୟରେ ଉଚ୍ଚକ୍ ଓ କେତେକ ସଦସ୍ୟ ଓଥେଲୋଙ୍କ ସଙ୍ଗେ ପରାମର୍ଶ କରୁଥିଲେ । ଏହି ସମୟରେ ବ୍ରାବାନ୍‌ଶିଓ ଉପସ୍ଥିତ ହୋଇ ଅଭିଯୋଗ କଲେ ଯେ ଓଥେଲୋ

ଇନ୍ଦ୍ରଜାଲ ଓ ମନ୍ତ୍ରତନ୍ତ୍ର ପ୍ରୟୋଗ କରି ଅନ୍ୟାୟ ଭାବରେ ତାଙ୍କର କନ୍ୟାକୁ ତାର ଇଚ୍ଛା ବିରୁଦ୍ଧରେ ବିବାହ କରିଅଛନ୍ତି । ଆଇନ ଅନୁସାରେ ଏପରି ଅପରାଧୀର ପ୍ରାଣଦଣ୍ଡ ହେବା କଥା ।

ବର୍ତ୍ତମାନ ଓଥେଲୋଙ୍କର ଅବସ୍ଥା ବଡ଼ ବିଚିତ୍ର । ଏକ ପକ୍ଷରେ ଭେନିସ୍ ସରକାରଙ୍କର ତାଙ୍କଠାରେ ଏତେ ଦୃଢ଼ବିଶ୍ୱାସ ଯେ ଆକ୍ରମଣକାରୀ ତୁର୍କିମାନଙ୍କର ଧ୍ୱଂସ ସାଧନ କରିବା ପାଇଁ ତାଙ୍କୁ ଶାସନକର୍ତ୍ତା ଓ ପ୍ରଧାନ ସେନାପତି ରୂପେ ନିଯୁକ୍ତ କରାଯାଇ-ଅଛି । ଅପରପକ୍ଷରେ ତାଙ୍କ ଉପରେ ଏପରି ଏକ ଅଭିଯୋଗ ଆଗତ ଯେ, ତାହା ପ୍ରମାଣିତ ହେଲେ ତାଙ୍କର ପ୍ରାଣଦଣ୍ଡ ହୋଇପାରେ ।

ଡିଉକ୍ ଓ ସଦସ୍ୟମାନେ ବୃଦ୍ଧ ବ୍ରାବାନ୍‌ଶିଓଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରି ଧୈର୍ଯ୍ୟସହକାରେ ସମସ୍ତ ଘଟନା ଶୁଣିଲେ । ବ୍ରାବାନ୍‌ଶିଓ କହିଲେ ଯେ ଡେସ୍‌ଡେମୋନା ଭଳି ସମ୍ଭ୍ରାନ୍ତ ବଂଶର କନ୍ୟା ସ୍ୱଜାତୀୟ ଶ୍ୱେତକାୟ ଯୁବକକୁ ବିବାହ ନ କରି ଜଣେ କୃଷ୍ଣକାୟ ମୁର୍‌କୁ ସ୍ୱେଚ୍ଛାରେ ବିବାହ କରିବା ଅସମ୍ଭବ । ତେଣୁ ଓଥେଲୋ ମନ୍ତ୍ରତନ୍ତ୍ର, ଔଷଧ ପ୍ରଭୃତି ପ୍ରୟୋଗ କରି ତାଙ୍କ କନ୍ୟାକୁ ଭୁଲାଇ ଆଣି ବିବାହ କରିଥିବା ଅପରାଧରେ ତାର ବିଚାର କରାଯାଉ ।

ଡିଉକ୍ ଓ ସଦସ୍ୟମାନେ ଦେଖିଲେ ଯେ ବ୍ରାବାନ୍‌ଶିଓଙ୍କର ଅଭିଯୋଗ କେବଳ ଅନୁମାନ ଉପରେ ପ୍ରତିଷ୍ଠିତ; ପ୍ରମାଣ ଉପରେ ନୁହେଁ । ତଥାପି ସେମାନେ ଓଥେଲୋଙ୍କୁ ଅଭିଯୋଗର ଉତ୍ତର ଦେବାକୁ କହିଲେ ।

ଓଥେଲୋ ଆତ୍ମସମର୍ଥନ କରି କହିଲେ—"ମୋ ସହିତ ଡେସ୍‌ଡେମୋନାଙ୍କର କିପରି ପ୍ରଣୟ ଜାତ ହେଲା, ତାହା ବୁଝାଇ କହିବା ଆବଶ୍ୟକ । ବ୍ରାବାନ୍‌ଶିଓ ମୋତେ ସ୍ନେହ କରୁଥିଲେ ଓ

ଅନେକ ସମୟରେ ମୋତେ ଡାକ ନେଇ ମୋର ଜୀବନ କାହାଣୀ ମୋଠାରୁ ଶୁଣୁଥିଲେ । ବାଲ୍ୟକାଳଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ମୁଁ କିପରି ଆପଦ-ବିପଦର ସମ୍ମୁଖୀନ ହୋଇଛି, କେତେ ଯୁଦ୍ଧ-ବିଗ୍ରହରେ ଯୋଗ ଦେଇଛି, କେତେ ଦୁଃସାହସିକ କାର୍ଯ୍ୟ କରିଛି, କେତେ ସୌଭାଗ୍ୟ ଓ କେତେ ଦୁର୍ଭାଗ୍ୟ ମଧ୍ୟରେ ଗତି କରିଛି, ସେ ସବୁ ମୁଁ ବର୍ଣ୍ଣନା କରେ । ସେତେବେଳେ ଡେସ୍‌ଡେ଼ମୋନା ନିବିଷ୍ଟ ମନରେ ତାହା ଶୁଣୁଥାନ୍ତି । ମୋର ଦୁଃଖ ବିପଦର କାହାଣୀ ଶୁଣିଲା-ବେଳେ ତାଙ୍କ ଚକ୍ଷୁରୁ ଅଶ୍ରୁ ବହିଯାଏ । ଏହା ପରେ ଦିନେ ସେ ମୋତେ ପ୍ରଣୟ ନିବେଦନ କଲେ ଓ ମୁଁ ତାହା ଗ୍ରହଣ କରି ତାଙ୍କୁ ବିବାହ କରିଅଛି । ଯଦି ଏହାକୁ ଆପଣ ମନ୍ତ୍ରଯନ୍ତ୍ର ବା ଔଷଧ ପ୍ରୟୋଗ କହନ୍ତି, ତେବେ ମୋର କିଛି କହିବାର ନାହିଁ । ମୋର ଏହି କଥାରେ ସନ୍ଦେହ ଥିଲେ ଆପଣମାନେ ଡେସ୍‌ଡେମୋନାଙ୍କ ମୁଖରୁ ସମସ୍ତ କଥା ଶୁଣି ସତ୍ୟାସତ୍ୟ ବୁଝିପାରନ୍ତି ।"

ଡେସ୍‌ଡେମୋନାଙ୍କୁ ଡକାଇ ପଚାରିବା ପାଇଁ ବ୍ରାବାନ୍‌ଶିଓ ପ୍ରସ୍ତାବ ଦେଲେ । ସେ ଆଶା କରିଥିଲେ ଯେ ତାଙ୍କ କନ୍ୟା ପିତାଙ୍କ କଥାକୁ ସମର୍ଥନ କରିବ; କିନ୍ତୁ ଡେସ୍‌ଡେମୋନା କହିଲେ—"ପିତା, ମୋର ଜୀବନ ପାଇଁ, ମୋର ଶିକ୍ଷାଦୀକ୍ଷା ପାଇଁ ମୁଁ ଆପଣଙ୍କଠାରେ ଋଣୀ । ଆପଣଙ୍କୁ ଭକ୍ତି ଓ ସମ୍ମାନ କରିବା ମୋର କର୍ତ୍ତବ୍ୟ । ସେ କର୍ତ୍ତବ୍ୟରେ ମୁଁ ହେଳା କରିନାହିଁ । କିନ୍ତୁ ମୁଁ ଓଥେଲୋଙ୍କୁ ସ୍ୱେଚ୍ଛାରେ ହୃଦୟ ଅର୍ପଣ କରି ପତିରୂପେ ଗ୍ରହଣ କରିଅଛି । ସ୍ୱାମୀ ପ୍ରତି ମୋର ଯେଉଁ କର୍ତ୍ତବ୍ୟ, ତାହା ପାଳନ କରିବାକୁ ମୋତେ ଆପଣ ଅନୁମତି ଦେବେ ବୋଲି ମୋର ବିଶ୍ୱାସ ।"

ବୃଦ୍ଧ ବ୍ରାବାନ୍‌ଶିଓ ଦେଖିଲେ ଯେ ତାଙ୍କର ଅଭିଯୋଗ ମିଥ୍ୟା ବୋଲି ପ୍ରମାଣିତ ହୋଇଗଲା । ସେ ଗଭୀର ଦୁଃଖରେ ଓଥେଲୋଙ୍କୁ

ତାକ ତାଙ୍କ ହସ୍ତରେ ଡେସ୍‌ଡେମୋନାଙ୍କୁ ଅର୍ପଣ କରି କହିଲେ, "ମୋର ଅଧିକାର ଥିଲେ ମୁଁ କଦାପି ଜଣେ ମୁର୍ ହାତରେ ମୋ କନ୍ୟାକୁ ଦେଇ ନ ଥାନ୍ତି । ମୋର କନ୍ୟା ଯେ ଏପରି କରିବ, ମୁଁ କଳ୍ପନା କରି ନ ଥିଲି । ସୌଭାଗ୍ୟର କଥା ଯେ ମୋର ଆଉ କନ୍ୟା ନାହିଁ । ତାହା ହୋଇଥିଲେ ମୋର ଦୁର୍ଭାଗ୍ୟର ସୀମା ନଥାନ୍ତା ।"

ଯାହା ହେଉ, ଓଥେଲୋ ଅଭିଯୋଗରୁ ମୁକ୍ତ ହୋଇ ନବ-ପରିଣୀତା ପତ୍ନୀ ଡେସ୍‌ଡେମୋନାଙ୍କ ସହିତ ସାଇପ୍ରସ୍ ଚାଲିଗଲେ । ତାଙ୍କ ସହିତ କାସିଓ ନାମକ ଜନୈକ ବନ୍ଧୁ ତାଙ୍କର ସହକାରୀ ସେନାପତିରୂପେ ଗଲେ ।

କାସିଓ ଓଥେଲୋଙ୍କର ବିଶ୍ୱସ୍ତ ଅନ୍ତରଙ୍ଗ ବନ୍ଧୁ ଥିଲେ । ଏହି ଫ୍ଲୋରେନ୍ସାଗତ ଯୁବକ କାସିଓ ଭେନସ୍‌ର ଜଣେ ବିଶିଷ୍ଟ ଯୋଦ୍ଧା ଥିଲେ । ତାଙ୍କର ରୂପ ଓ ଗୁଣରେ ସେ ଅନେକଙ୍କର ପ୍ରିୟ ହୋଇପାରିଥିଲେ । ଡେସ୍‌ଡେମୋନାଙ୍କ ସହିତ ଓଥେଲୋଙ୍କର ବିବାହରେ ମଧ୍ୟ ସେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଏହା ଫଳରେ ସେ ଉଭୟଙ୍କର ସ୍ନେହ ଓ ବିଶ୍ୱାସର ପାତ୍ର ହୋଇଥିଲେ ।

ଯେଉଁମାନେ ଓଥେଲୋଙ୍କ ସହିତ ସାଇପ୍ରସ୍ ଯାଇଥିଲେ, ସେମାନଙ୍କ ମଧ୍ୟରେ ଇୟାଗୋ ନାମରେ ଆଉ ଜଣେ ସେନାପତି ଥିଲା । ତାର ପତ୍ନୀ ଡେସ୍‌ଡେମୋନାଙ୍କ ସହଚରୀରୂପେ ତାଙ୍କ ସହିତ ରହୁଥିଲା ।

ଏହି ଇୟାଗୋ ନିତାନ୍ତ ଖଳ ପ୍ରକୃତିର ଲୋକ । ବୟସରେ ସେ କାସିଓଠାରୁ ବଡ଼ । ଏପରି ସ୍ଥଳେ ଓଥେଲୋ ତାକୁ ନିଜର ସହକାରୀ ସେନାପତି ପଦରେ ନିଯୁକ୍ତ ନ କରି କାସିଓଙ୍କୁ ନିଯୁକ୍ତ କରିବାରୁ ସେ ମନେ ମନେ ବଡ଼ କ୍ଷୁଣ୍ଣ ହେଲା ଏବଂ କିପରି କାସିଓଙ୍କର

ସର୍ବନାଶ କରିବ ତାହାହିଁ ଚିନ୍ତା କଲା । ସେ ମନର ଭାବ ଗୋପନ ରଖି କାସିଓଙ୍କ ସହିତ ଘନିଷ୍ଠ ବନ୍ଧୁତା ଦେଖାଇ ଚଳୁଥାଏ; ମାତ୍ର କପରି ଓଥେଲୋ କାସିଓଙ୍କ ପ୍ରତି ବିରକ୍ତ ହେବେ ତାହାର ଉପାୟ ଚିନ୍ତା କରୁଥାଏ ।

ଓଥେଲୋ ସାଇପ୍ରସ୍‌ରେ ପହଞ୍ଚି ସମ୍ବାଦ ପାଇଲେ ଯେ ତୁର୍କି ରଣତରୀଗୁଡ଼ିକ ପ୍ରବଳ ବାତ୍ୟାରେ ପଡ଼ି ଧ୍ୱଂସ ପାଇଯାଇଅଛି । ତେଣୁ ତୁର୍କିମାନେ ଆଉ ସାଇପ୍ରସ୍ ଆକ୍ରମଣ କରିବାର କୌଣସି ଆଶଙ୍କା ନାହିଁ । ଏହି ସମ୍ବାଦରେ ଓଥେଲୋ ନିଶ୍ଚିନ୍ତ ହୋଇ ନିଜର ସୈନ୍ୟସାମନ୍ତମାନଙ୍କୁ ଆମୋଦପ୍ରମୋଦ କରିବା ପାଇଁ ଅନୁମତି ଦେଲେ । କିନ୍ତୁ ସେମାନେ ଯେପରି ଅତିରିକ୍ତ ମଦ୍ୟପାନ କରି କୌଣସି ପ୍ରକାର ଗୋଳମାଳ ନ କରନ୍ତି କିମ୍ବା ଶାନ୍ତିଭଙ୍ଗ ନ କରନ୍ତି, ତାହା ଦେଖିବା ପାଇଁ ନିଜର ସହକାରୀ କାସିଓଙ୍କୁ ଆଦେଶ ଦେଲେ ।

କାସିଓଙ୍କ ଉପରେ ଶାନ୍ତିରକ୍ଷାର ଦାୟିତ୍ୱ ଅର୍ପଣ କରି ଓଥେଲୋ ନିଶ୍ଚିନ୍ତ ମନରେ ବିଶ୍ରାମ କରିବାକୁ ଗଲେ । ଏହି ଅବସରରେ ଇୟାଗୋ ନିଜର ଦୁରଭିସନ୍ଧି ଚରିତାର୍ଥ କରିବାକୁ ଉପାୟ କଲା । ସେ ବନ୍ଧୁଭାବରେ କାସିଓଙ୍କୁ ଡାକି ନେଇ ଯଥେଷ୍ଟ ମଦ ପିଆଇଦେଲା । କାସିଓ ମଝେ ମଝେ ଆଉ ପିଇବାକୁ ଅନିଚ୍ଛା ପ୍ରକାଶ କରୁଥିଲେହେଁ ଇୟାଗୋର ଅନୁରୋଧରେ ପଡ଼ି ଅତ୍ୟଧିକ ମଦ୍ୟପାନ କଲେ । କିଛି ସମୟ ପରେ ସେ ମଦ୍ୟର ପ୍ରଭାବରେ ଆଉ ପ୍ରକୃତିସ୍ଥ ରହିପାରିଲେ ନାହିଁ । ଏଣେ ଇୟାଗୋ ଆଉ ଜଣେ ଦୁଷ୍ଟ ପ୍ରକୃତିର ଲୋକକୁ କିଛି ଅର୍ଥ ଦେଇ କାସିଓଙ୍କ ସଙ୍ଗେ କଳହ କରିବାକୁ ପଠାଇ ଦେଲା । କାସିଓ ସେତେବେଳକୁ ନିଜର କର୍ତ୍ତବ୍ୟ ପାଳନ କରିବା ଅବସ୍ଥାରେ ନ ଥିଲେ । ସେ ସୈନ୍ୟମାନଙ୍କର ଆଚରଣ ପ୍ରତି ଦୃଷ୍ଟି

ଦେବେ କିଅଣ, ନିଜେ ମଦ୍ୟପାନ ହେତୁ ସେହି ଦୁଷ୍ଟଲୋକଟି ଉପରେ କ୍ରୁଦ୍ଧ ହୋଇ ତାହାକୁ ତରବାରିଦ୍ୱାରା ଆକ୍ରମଣ କଲେ । ଏ ଦୁହିଁଙ୍କର କଳହ ନିବାରଣ କରିବାପାଇଁ ମଣ୍ଟାନୋ ନାମକ ଜଣେ ବିଶିଷ୍ଟ ସେନାନାୟକ ଚେଷ୍ଟା କଲେ; ମାତ୍ର କାସିଓଙ୍କ ତରବାରି-ଦ୍ୱାରା ସେ ଆହତ ହେଲେ । ଏହା ଫଳରେ ପ୍ରବଳ ଉତ୍ତେଜନା ଦେଖାଗଲା ଓ ସୈନ୍ୟମାନଙ୍କ ମଧ୍ୟରେ ବିଶୃଙ୍ଖଳା ଖେଳିଗଲା । ଇୟାଗୋ ଏହିପରି ଗୋଟାଏ ଅବସ୍ଥା ସୃଷ୍ଟି କରିବାକୁ ଚେଷ୍ଟିତ ଥିଲା । ସେ ଏହାର ସୁବିଧା ନେଇ ଦୁର୍ଗର ସତର୍କ-ଘଣ୍ଟାକୁ ବଜାଇଦେଲା । ଏଥିରୁ ସମସ୍ତେ ବୁଝିଲେ ଯେ ଗୋଟାଏ କିଛି ଭୟଙ୍କର ବିପଦ ଘଟିଛି । ଓଥେଲୋ ନିଜ ବିଶ୍ରାମକକ୍ଷରୁ ବାହାରି ଆସି ଇୟାଗୋକୁ ପଚାରିବାରୁ ସେ ଏପରି ଉତ୍ତର ଦେଲା ଯେ ସେଥିରୁ ଓଥେଲୋ କାସିଓଙ୍କୁ ଦୋଷୀ ବୋଲି ମନେ ମନେ ସ୍ଥିର କଲେ । କାସିଓ ସେତେବେଳକୁ ଟିକିଏ ପ୍ରକୃତିସ୍ଥ ହୋଇଥିଲେହେଁ ନିଜର ଆଚରଣରେ ବଡ଼ ଲଜ୍ଜା ବୋଧ କରି କିଛି କହିପାରିଲେ ନାହିଁ । ଏହି ଘଟନା ଫଳରେ କାସିଓଙ୍କୁ ସହକାରୀ ସେନାପତି ପଦରୁ ଅନ୍ତର କରିଗଲା ଏବଂ ତାଙ୍କ ସ୍ଥାନରେ ଇୟାଗୋ ନିଯୁକ୍ତ ହେଲା ।

କାସିଓ ଡେସ୍‌ଡେମୋନା ଏବଂ ଓଥେଲୋ ଉଭୟଙ୍କର ଆଦରର ପାତ୍ର ଥିଲେ । ଓଥେଲୋ ତାଙ୍କ ଉପରେ ଏତେ ଗଭୀର ଆସ୍ଥା ରଖିଥିଲେ ଯେ ତାଙ୍କ ଗୃହକୁ କାସିଓଙ୍କର ଅବାଧ ପ୍ରବେଶ ଥିଲା । ଡେସ୍‌ଡେମୋନା ପୂର୍ବପରି ତାଙ୍କ ପ୍ରତି ଆଦର ଓ ସହାନୁଭୂତି ପ୍ରଦର୍ଶନ କରୁଥିଲେ । କିନ୍ତୁ ଓଥେଲୋ ସୈନିକମାନଙ୍କ ମଧ୍ୟରେ ଶୃଙ୍ଖଳାକୁ ଉଚ୍ଚ ସ୍ଥାନ ଦେଉଥିଲେ ଏବଂ କାସିଓ ତାଙ୍କର ଯେତେ ପ୍ରିୟ ହେଲେହେଁ କର୍ତ୍ତବ୍ୟ ଅନୁରୋଧରେ ତାଙ୍କୁ ପଦଚ୍ୟୁତ କରିବା

ଉଚିତ ମନେ କଲେ । କାସିଓଙ୍କର କର୍ତ୍ତବ୍ୟ-ଚ୍ୟୁତି ପାଇଁ ଇୟାଗୋ ଯେ ହୀନ ଉଦ୍ୟମ କରିଥିଲା, ତାହା ତାଙ୍କୁ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା ।

ଇୟାଗୋର ପ୍ରଥମ କୂଟରଚନା ସଫଳ ହେଲା । କିନ୍ତୁ ତାର ଦୁଷ୍ଟ ମସ୍ତିଷ୍କରେ ଆହୁରି ଅନେକ କୂଟ ମନ୍ତ୍ରଣା ଖେଳୁଥିଲା । ସେ ଓଥେଲୋ ଓ ଡେସ୍‌ଡେମୋନାଙ୍କର ମଧ୍ୟ ଅନିଷ୍ଟ କରିବାପାଇଁ ଜାଲ ବିସ୍ତାର କରିବାକୁ ଲାଗିଲା ।

ଏଣେ ଇୟାଗୋ କାସିଓ ନିକଟରେ ବନ୍ଧୁତାର ଛଳନା କରୁଥାଏ । କାସିଓ କହିଲେ, "ମୁଁ ମଦ୍ୟ ପିଇ ଯେପରି ପଶୁପରି ବ୍ୟବହାର ଦେଖାଇଛି, ସେଥିପାଇଁ ଘୋର ଲଜ୍ଜିତ । ଯେଉଁ ଓଥେଲୋ ମୋତେ ଏତେ ଆଦର କରୁଥିଲେ, ଉଚ୍ଚ ପଦ ଦେଇଥିଲେ, ତାଙ୍କୁ ମୁଖ ଦେଖାଇବି କିପରି ? ମୋପକ୍ଷରେ ପଦଚ୍ୟୁତ ହେବାର ଅର୍ଥ ହେଉଛି ମୋର ସର୍ବନାଶ । କିନ୍ତୁ କିପରି ମୁଁ ଓଥେଲୋଙ୍କୁ ପ୍ରାର୍ଥନା କରିବି ଯେ ମୋତେ ମୋର ପୂର୍ବ ପଦରେ ନିଯୁକ୍ତ କରାଯାଉ ?"

ଇୟାଗୋ ବୁଝାଇବାକୁ ଲାଗିଗଲା, "ତୁମର ଅପରାଧ ଯେପରି କିଛି ଗୁରୁତର ନୁହେଁ । ସହସ୍ର ସହସ୍ର ଲୋକ ମଦ୍ୟପାନ କରନ୍ତି । ସୈନିକମାନେ ପ୍ରାୟ ସମସ୍ତେ ମଦ୍ୟପାନ କରିଥାନ୍ତି । ତେଣୁ କେତେବେଳେ କିଏ ଟିକିଏ ଅତିରିକ୍ତ ମଦ୍ୟପାନ କରି ମାତାଲ ହେବା ଯେପରି ବିଶେଷ ଦୋଷାବହ ନୁହେଁ । ଦୌବକ୍ରେ ତୁମର ଏହି ଘଟଣାଟା ଓଥେଲୋଙ୍କ ଦୃଷ୍ଟିରେ ପଡ଼ିଯାଇଛି ଓ ସେ ମନ୍ୟୁର ଉତ୍ତେଜନାରେ ତୁମକୁ ପଦଚ୍ୟୁତ କରିଅଛନ୍ତି । ତେବେ ଏ ଆଦେଶ ଯେ ପରିବର୍ତ୍ତିତ ନ ହେବ, ଏପରି ଭାବିବାର କାରଣ ନାହିଁ । ତୁମେ ଜାଣ ଯେ ଆମର ସେନାପତି ତାଙ୍କର ପତ୍ନୀଙ୍କ କଥାରେ ପରିଚାଳିତ । ସେ ଇଚ୍ଛାକଲେ ଓଥେଲୋଙ୍କଦ୍ୱାରା ଯେକୌଣସି କାର୍ଯ୍ୟ କରାଇ ପାରନ୍ତି । ତୁମକୁ ତୁମର ପୂର୍ବପଦ ଦେବା ତ ଅତି ସାମାନ୍ୟ

କଥା ! ଆହୁରି ମଧ୍ୟ ଡେସ୍‌ଡେମୋନା ବଡ଼ ଦୟାଶୀଳା; ଅନ୍ୟର ଉପକାର କରିପାରିଲେ ତାଙ୍କର ଆନନ୍ଦ । ତୁମକୁ ମଧ୍ୟ ସେ ବନ୍ଧୁ-ଦିନରୁ ଭଲରୂପେ ଜାଣନ୍ତି । ତୁମେ ତାଙ୍କୁ ଅନୁରୋଧ କର ଯେ, ସେ ତୁମପାଇଁ ଓଥେଲୋଙ୍କୁ କହିବେ । ତାହାହେଲେ ତୁମର ଉଦ୍ଦେଶ୍ୟ ନିଶ୍ଚୟ ସିଦ୍ଧ ହେବ ।"

ଇୟାଗୋର ଏହି ପରାମର୍ଶ ଖୁବ୍ ଉପଯୁକ୍ତ ମନେକରି କାସିଓ ଡେସ୍‌ଡେମୋନାଙ୍କୁ ପ୍ରାର୍ଥନା କଲେ ଯେ ତାଙ୍କୁ ନିଜ ପଦରେ ପୁନଃ ପ୍ରତିଷ୍ଠିତ କରିବାପାଇଁ ସେ ନିଜର ପତିଙ୍କୁ ଅନୁରୋଧ କରନ୍ତୁ । ସେତେବେଳେ କାସିଓ ସନ୍ଦେହ କରି ନ ଥିଲେ ଯେ ଇୟାଗୋର ଏହି ପରାମର୍ଶରେ ଗୋଟାଏ ଖରାପ ଦୁରଭିସନ୍ଧି ଥିଲା ।

ଡେସ୍‌ଡେମୋନା ଦୁଇ ତିନଥର ଓଥେଲୋଙ୍କୁ ଅନୁରୋଧ କଲେ ଯେ କାସିଓଙ୍କୁ ତାଙ୍କର ପୂର୍ବପଦ ଦିଆଯାଉ । ପ୍ରତ୍ୟେକ ବାର ଓଥେଲୋ କହନ୍ତି ଯେ କିଛି ଦିନ ପରେ ତାହା କରାଯିବ । ସୈନିକ ବିଭାଗର ଜଣେ ଅପରାଧୀକୁ ଏତେ ଶୀଘ୍ର ପୁନଃ ପ୍ରତିଷ୍ଠିତ କରିବା ନୀତିଦୃଷ୍ଟିରୁ ଠିକ୍ ହେବ ନାହିଁ । ଦିନେ ଡେସ୍‌ଡେମୋନା ଏହି ପ୍ରକାର ଉତ୍ତର ପାଇ କହିଲେ, "ତୁମେ ମୋତେ ଆଉ ଅପେକ୍ଷା କରିବାକୁ କହିଲେ ଚଳିବ ନାହିଁ । କାଲି ରାତି, ନୋହିଲେ ପଅରଦିନ ସକାଳକୁ ଯେପରି ତୁମର ଆଦେଶ ମିଳିଯାଏ । ଦେଖିପାରୁଥିବ ଯେ ସେ ବଡ଼ ଅନୁତପ୍ତ, କାହା ପାଖରେ ମୁଖ ଦେଖାଇବାକୁ ଲଜ୍ଜା ଅନୁଭବ କରୁଛି । ସାମାନ୍ୟ ଅପରାଧ ପାଇଁ ସେ ଯଥେଷ୍ଟ ଦଣ୍ଡ ଭୋଗି ସାରିଲାଣି ।" ତଥାପି ଓଥେଲୋ ଆଉ କିଛି ଦିନ ଅପେକ୍ଷା କରିବାକୁ କହିଲେ । ତହୁଁ ଡେସ୍‌ଡେମୋନା ଅଧୀର ହୋଇପଡ଼ି କହିଲେ, "ତୁମେ ମୋର ପ୍ରାଣପତି, ମୁଁ କାସିଓ ପାଇଁ କେତେ ଅନୁରୋଧ କଲିଣି । ଏଇ କାସିଓ ତୁମର ବିଶ୍ୱସ୍ତ ବନ୍ଧୁ ଥିଲା ଏବଂ

ଆମ ଦୁହିଙ୍କୁ ବିବାହ-ବନ୍ଧନରେ ମିଳାଇବା ପାଇଁ ତୁମେ ତାଙ୍କୁ ହିଁ ନିଯୁକ୍ତ କରିଥିଲ । ଏବେ କଅଣ ତାର ଏସବୁ ଉପକାର ଭୁଲିଗଲ ? ମୁଁ ଯେଉଁ ଅନୁଗ୍ରହ ଚାହୁଁଛି, ତାହା ଅତି ସାମାନ୍ୟ ।”

ଓଥେଲୋ କାସିଓଙ୍କୁ ତାଙ୍କ ପଦରେ ପୁନଃ ପ୍ରତିଷ୍ଠିତ କରିବାକୁ ଦୃଢ଼ ଆଶ୍ୱାସନା ଦେଲେ; ମାତ୍ର ଆଉ କିଛିଦିନ ଅପେକ୍ଷା କରିବାକୁ ହେବ ବୋଲି କହିଲେ ।

ଥରେ କାସିଓ ଡେସଡେମୋନାଙ୍କୁ ନିଜର ଅନୁରୋଧ ଜଣାଇବାକୁ ଆସିଥିଲେ । ସେ ଠିକ୍ ବିଦାୟ ନେଇ ଯିବାବେଳକୁ ଅନ୍ୟ ଦ୍ୱାରବାଟେ ଓଥେଲୋ ଓ ଇୟାଗୋ ଡେସ୍‌ଡେମୋନାଙ୍କ ଗୃହରେ ପ୍ରବେଶ କଲେ । କୌଶଳୀ ଇୟାଗୋ ମନକୁମନ କହିଲାପରି ଓଥେଲୋଙ୍କୁ ଶୁଣାଇ କହିଲା, “ମୋତେ ଏସବୁ ଭଲ ଲାଗେ ନାହିଁ ।” ସେତେବେଳେ ଓଥେଲୋ ଏ କଥାପ୍ରତି ଗୁରୁତ୍ୱ ଦେଇ ନ ଥିଲେ । ଡେସ୍‌ଡେମୋନା ଚାଲିଯିବା ପରେ ଇୟାଗୋ ଓଥେଲୋଙ୍କୁ ପଚାରିଲା, “ଆପଣ ଡେସଡେମୋନାଙ୍କର ପ୍ରଣୟପ୍ରାର୍ଥୀ ଥିବା ସମୟରେ କାସିଓ ସେ ବିଷୟ ଜାଣିଥିଲେ ତ ?” ଓଥେଲୋ ଉତ୍ତର କଲେ, “କେବଳ ଯେ ଜାଣିଥିଲେ ତା ନୁହେଁ; ସେ ଆମ ଦୁହିଙ୍କ ମଧ୍ୟରେ ସଂଯୋଗ ସ୍ଥାପନ କରିବାରେ ମଧ୍ୟସ୍ଥରୂପେ କାର୍ଯ୍ୟ କରୁଥିଲେ ।” ତହୁଁ ଇୟାଗୋ ଘୋର ବିସ୍ମୟରେ ଭ୍ରୂଲତା କୁଞ୍ଚିତ କରି ଏତିକି ମାତ୍ର ମନକୁ ମନ କହିଲା, “ତେବେ ତ ଠିକ୍ ।” ଓଥେଲୋ ଏହା ଶୁଣି ଅନେକ କଥା ଭାବିଗଲେ । ଏଥିପୂର୍ବରୁ ଇୟାଗୋ ଯାହା କହିଥିଲା, ତାହା ଚିନ୍ତା କରିବାକୁ ଲାଗିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଇୟାଗୋ ଜଣେ ସତ୍ୟବାଦୀ ଓ ନ୍ୟାୟପରାୟଣ ଲୋକ । ସେ ଭାବିଲେ, ଇୟାଗୋ କଥାର କିଛି ଗୂଢ଼ ମର୍ମ ଅଛି । ତେଣୁ ନିଜର

ମନୋଭାବ ଯେତେ ଅପ୍ରିୟ ହେଲେ ମଧ୍ୟ ସ୍ପଷ୍ଟଭାବରେ ପ୍ରକାଶ କରିବାକୁ ସେ ଇୟାଗୋକୁ ଅନୁରୋଧ କଲେ ।'

ଇୟାଗୋ ସୁଯୋଗ ପାଇ କହିଲା, "ସେପରି କିଛି କଥା ନାହିଁ । ହୁଏତ ଗୋଟାଏ ଦୁଶ୍ଚିନ୍ତା କିପରି ମୋ ମନରେ ପ୍ରବେଶ କରିଛି । ଜଗତରେ କେଉଁଠାରେ ଅବା ଦୁଶ୍ଚିନ୍ତା ପ୍ରବେଶ ନ କରି ରହିଛି ? ମୁଁ କେତେଟା ଘଟନା ଦେଖି ମନରେ କିଛି ଗୋଟାଏ ଭ୍ରାନ୍ତ ଧାରଣା କରିପାରିଥାଏ । ତାହା ଫଳରେ ଆପଣଙ୍କ ମନରେ ଅଶାନ୍ତି ସୃଷ୍ଟି କରିବା ମୋ ପକ୍ଷରେ ଅନ୍ୟାୟ ହେବ । ସାମାନ୍ୟ ସନ୍ଦେହରେ କୌଣସି ବ୍ୟକ୍ତିର ଦୁର୍ନାମ କରିବା ଏକପ୍ରକାର ପାପ । ତେଣୁ ମୋର ମନର କଥା ପ୍ରକାଶ କରିବାକୁ କହନ୍ତୁ ନାହିଁ ।"

ଏହା ଶୁଣି ଓଥେଲୋଙ୍କର କୌତୂହଳ ଆହୁରି ବୃଦ୍ଧି ପାଇଲା । ତାଙ୍କ ମନରେ ନାନା ସନ୍ଦେହ ଜାତ ହେଲା । ସେ ଇୟାଗୋର ମନକଥା ଜାଣିବାକୁ ଚାହିଁଲେ । ଇୟାଗୋ ସ୍ପଷ୍ଟଭାବରେ କିଛି ନକହି କେବଳ କହିଲା, "ମୋର ସନ୍ଦେହ ହୁଏତ ଠିକ୍ ନୁହେଁ । ଆପଣଙ୍କ ମନରେ ଅଶାନ୍ତି ଜନ୍ମାଇବା ମୋ ପକ୍ଷରେ ଉଚିତ ହେବନାହିଁ । ମୁଁ କେବଳ ଏତିକି କହିପାରେ ଯେ ଈର୍ଷା ପ୍ରତି ସାବଧାନ ରହନ୍ତୁ ।"

ଏଥିରେ ଓଥେଲୋଙ୍କର ସନ୍ଦେହ ଆହୁରି ବୃଦ୍ଧି ପାଇଲା । ମନରେ ଶାନ୍ତି ପରିବର୍ତ୍ତେ ଅଶାନ୍ତି ବିରାଜିତ କଲା । ସେ କହିଲେ, "ମୁଁ ଜାଣେ ଯେ ଡେସଡେମୋନା ସୁନ୍ଦରୀ, ଗୁଣବତୀ । ଆମୋଦ-ପ୍ରମୋଦରେ ଦିନ କଟାଇବାକୁ ସେ ଭଲପାନ୍ତି । କ୍ରୀଡ଼ା-କୌତୁକରେ ତାଙ୍କର ଆନନ୍ଦ । ଗୀତନୃତ୍ୟପ୍ରତି ମଧ୍ୟ ତାଙ୍କର ଆସକ୍ତି ଅଛି । ସେ ଅନେକ ଲୋକଙ୍କ ସଙ୍ଗେ ମିଳାମିଶା କରନ୍ତି । କିନ୍ତୁ ତାଙ୍କର ଚରିତ୍ର ନିଷ୍କଳଙ୍କ ବୋଲି ମୋର ଧାରଣା । କୌଣସି ପ୍ରମାଣ ନ ପାଇବା-

ଯାଏ, ସେ ଚରିତ୍ରହୀନା ବୋଲି ମୁଁ କେବେ ହେଲେ କଳ୍ପନା କରିପାରିବ ନାହିଁ ।”

ଇୟାଗୋ ଦେଖିଲା ଯେ ଓଥେଲୋଙ୍କ ମନରେ ସନ୍ଦେହର ବୀଜାରୋପଣ ହେଲାଣି । ସେ ମନେମନେ ଆନନ୍ଦିତ ହୋଇ କହିଲା, “ମୁଁ ମଧ୍ୟ କୌଣସି ପ୍ରମାଣ ପାଇଛି ବୋଲି କହୁନାହିଁ; କେବଳ ସନ୍ଦେହ ମାତ୍ର କରୁଛି । ତେଣୁ ମୋର ବିଶେଷ ଅନୁରୋଧ, ଏଣିକି ଆପଣ ନିଜ ପତ୍ନୀଙ୍କର ଓ କାସିଓଙ୍କର ଆଚରଣ ଉପରେ ଟିକିଏ ଦୃଷ୍ଟି ରଖନ୍ତୁ । ଆମ ଦେଶର ଭଦ୍ରମହିଳାମାନଙ୍କ ସ୍ୱଭାବ ବିଷୟରେ ଆପଣଙ୍କ ଅପେକ୍ଷା ମୁଁ ବେଶି ଜାଣେ । ମୋର ଧାରଣା ଯେ ଆମ ଦେଶର ସ୍ତ୍ରୀମାନଙ୍କ ବିଷୟରେ ସେମାନଙ୍କ ସ୍ୱାମୀମାନେ ଯାହା ଜାଣନ୍ତି, ଭଗବାନ ତାହା ଅପେକ୍ଷା ଖୁବ୍ ବେଶି ଜାଣନ୍ତି । ଡେସଡେ଼ମୋନା ପିତାଙ୍କୁ ଏପରି ପ୍ରତାରଣା କରି ଆପଣଙ୍କୁ ଗୋପନରେ ବିବାହ କଲେ ଯେ, ବୃଦ୍ଧ ବ୍ରାବାନ୍‌ସିଓ ବିଶ୍ୱାସ କରିଥିଲେ ଆପଣ ମନ୍ତ୍ର-ଯନ୍ତ୍ର ବା ଔଷଧ ପ୍ରୟୋଗ କରିଅଛନ୍ତି । ପରେ ଅବଶ୍ୟ ପ୍ରକୃତ ସତ୍ୟ ଜଣାପଡ଼ିଗଲା । ଏଇ ଘଟଣାରୁ ଆପଣ ଆମ ଭେନିସ୍‌ର ନାରୀ-ମାନଙ୍କ ସ୍ୱଭାବ ବିଷୟ କିଛି ଅନୁମାନ କରିପାରିବେ ।”

ଓଥେଲୋ ସଂଶୟ-ଦୋଳାରେ ପଡ଼ି ଭାବିଲେ, ‘ବାସ୍ତବିକ କଥା; ଯେ ନିଜର ପିତାଙ୍କୁ ପ୍ରତାରିତ କରିପାରେ, ସେ ତାର ସ୍ୱାମୀକୁ ପ୍ରତାରଣା କରିବା ଅସମ୍ଭବ କାହିଁକି ହେବ ?’

ଇୟାଗୋ ଦେଖିଲା ଯେ ତାର ମନ୍ତ୍ର ବେଶ୍ କାମ୍ କରୁଛି । ଓଥେଲୋଙ୍କ ଅନୁରୋଧ ଉପେକ୍ଷାକରି ସେ କହିଲା, “କାସିଓ ମୋର ଅନ୍ତରଙ୍ଗ ବନ୍ଧୁ । ତାଙ୍କ ବିରୁଦ୍ଧରେ କିଛି କହିବା ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ତା ସଙ୍ଗେ ସଙ୍ଗେ ଆପଣଙ୍କ ପ୍ରତି ମୋର କର୍ତ୍ତବ୍ୟ ଅଛି । ସତ୍ୟ ଓ ନ୍ୟାୟର ଅନୁରୋଧରେ ଯାହା କହିବା ଦରକାର,

ତାହା କହିବା ମୋର ଧର୍ମ । ଆପଣ ଜାଣନ୍ତି ଯେ ଭେନସ୍‌ର ଅନେକ କୁଳୀନ ଯୁବକ ଡେସ୍‌ଡେମୋନାଙ୍କ ପ୍ରଣୟପ୍ରାର୍ଥୀ ହୋଇଥିଲେ; କିନ୍ତୁ ସେ ସେମାନଙ୍କୁ ବିବାହ ନ କରି ଆପଣଙ୍କୁ ବିବାହ କରିଛନ୍ତି । ଆପଣ କୃଷ୍ଣକାୟ, ପୁଣି ବିଦେଶୀ । ଏହା ଏକ ଅସାଧାରଣ ଘଟନା । ଏଥିରୁ ଜଣାଯାଏ ଯେ ତାଙ୍କର ସ୍ୱେଚ୍ଛାଗୃହିତା ପ୍ରବଳ । ହୁଏତ ପରେ ନିଜ ଦେଶର ଶ୍ୱେତକାୟ ସୁନ୍ଦର ଯୁବକ-ମାନଙ୍କ ସହିତ ଆପଣଙ୍କର ତୁଳନା କରି ସେ ଆପଣଙ୍କ ପ୍ରତି ବୀତଶ୍ରଦ୍ଧ ହୋଇପଡ଼ିଛନ୍ତି । ସେ ଯାହା ହେଉ, ମୋର ପରାମର୍ଶ ହେଉଛି ଯେ ଆପଣ ଧୈର୍ଯ୍ୟ ଧରି କାସିଓଙ୍କ ପଦଚ୍ୟୁତି ଆଦେଶକୁ ରଦ୍ଦ ନ କରି ଆଉ କିଛିଦିନ ଗଡ଼ାଇ ଦିଅନ୍ତୁ । ଏଥିମଧ୍ୟରେ ଡେସ୍‌ଡେମୋନା ତାଙ୍କ ପାଇଁ କଅଣ କରୁଛନ୍ତି ଓ କାସିଓଙ୍କ ସଙ୍ଗେ ଡେସ୍‌ଡେମୋନା-ଙ୍କର କି ପ୍ରକାର ବ୍ୟବହାର ଅଛି, ତାହା ଉତ୍ତମରୂପେ ଲକ୍ଷ୍ୟ କରି ନିଜର ମତ ସ୍ଥିର କରନ୍ତୁ ।"

ଏଣେ ଓଥେଲୋଙ୍କ ମନରେ ନିଜ ପତ୍ନୀଙ୍କ ଆଚରଣ ପ୍ରତି ସନ୍ଦେହ ଜନ୍ମାଇ ସାରି ଇଆଗୋ କାସିଓଙ୍କୁ କହିଲା ଯେ ସେ ବାରମ୍ବାର ଡେସ୍‌ଡେମୋନାଙ୍କୁ ଅନୁରୋଧ କରନ୍ତୁ । ତାହାହେଲେ ଡେସ୍‌ଡେମୋନା ଓଥେଲୋଙ୍କୁ କହି ତାଙ୍କୁ ନିଜ ପଦରେ ପୁନଶ୍ଚ ନିଯୁକ୍ତ କରାଇବେ । ଏହିପରି କୌଶଳ ଲଗାଇ ସେ ସମସ୍ତଙ୍କୁ ଫାଶରେ ପକାଇବାର ଉପାୟ କଲା ।

ଏଣିକି ଓଥେଲୋ ନିତାନ୍ତ ଅସ୍ଥିର ହୋଇପଡ଼ିଲେ । ତାଙ୍କ ମନର ଶାନ୍ତି ଲୋପ ପାଇଲା । ରାତିରେ ତାଙ୍କୁ ଆଉ ନିଦ୍ରା ହେଲା ନାହିଁ । କୌଣସି କାର୍ଯ୍ୟରେ ସେ ମନ ଦେଇ ପାରିଲେ ନାହିଁ । ଯୁଦ୍ଧର ନାମ ଶୁଣିଲାମାତ୍ରେ ଯାହାର ରକ୍ତ ଉଷ୍ଣ ହୋଇଉଠୁଥିଲା; ସୈନ୍ୟସାମନ୍ତ, ରଣବାଦ୍ୟ ପ୍ରଭୃତି ଏଣିକି ତାଙ୍କ ହୃଦୟରେ କୌଣସି ଉତ୍ତେଜନା

ଦୃଷ୍ଟି କଲ ନାହିଁ । ସ୍ଥୂଳତଃ ଜଗତର କୌଣସି ପଦାର୍ଥ ତାଙ୍କୁ ଆଉ ଆନନ୍ଦ ଦେଇ ପାରିଲା ନାହିଁ । ସେ ସର୍ବଦା ଦୁଶ୍ଚିନ୍ତାରେ ବୁଡ଼ି ରହିଲେ । ବେଳେବେଳେ ସେ ଭାବୁଥିଲେ ଯେ ଡେସ୍‌ଡେମୋନାଙ୍କର ତାଙ୍କ ପ୍ରତି ପ୍ରେମ ପବିତ୍ର, ତାଙ୍କର ଚରିତ୍ର ନିଷ୍କଳଙ୍କ । ପୁଣି ବେଳେବେଳେ ସେ ଭାବୁଥିଲେ ଯେ ନାରୀର ହୃଦୟ କିଏ ଜାଣିପାରେ ? ହୁଏତ ଡେସ୍‌ଡେମୋନା ତାଙ୍କ ପ୍ରତି ପ୍ରେମର ଛଳନା କରି କାସିଓଙ୍କୁ ହୃଦୟ ଅର୍ପଣ କରିଛନ୍ତି । ଏହିପରି ଦ୍ୱିଧାରେ ପଡ଼ି ସେ ପାଗଳ ପରି ହୋଇଗଲେ । ଥରେ ସେ ଇୟାଗୋଙ୍କୁ ଦେଖିଲାମାତ୍ରେ ତାହାର ବେକକୁ ଚିପିଧରି କହିଲେ—"ଦେଖ, ତୁମକୁ ପ୍ରମାଣ ଦେବାକୁ ହେବ ଯେ ଡେସ୍‌ଡେମୋନାର ଚରିତ୍ର କଳଙ୍କିତ । ତା ନହେଲେ ମିଥ୍ୟା ଅଭିଯୋଗ କରିଥିବା ଯୋଗୁଁ ତୁମର ପ୍ରାଣ ନେବି ।" ଇୟାଗୋ ଛଳନା କରି କହିଲା, "ମୁଁ ସରଳ ବିଶ୍ୱାସରେ ଆପଣଙ୍କୁ ମୋ ମନକଥା କହିଦେଲି । ଏହା କଅଣ ମୋର ଅପରାଧ ? ସାଧୁତା, ସରଳ ବିଶ୍ୱାସ ଓ ସତ୍ୟକଥନ ଯଦି ମୋର ଦୋଷ ହୁଏ, ମୁଁ ଆଉ କାହାକୁ କହିବି ? ଯାହା ହେଉ, ଆପଣଙ୍କୁ ଗୋଟିଏ କଥା ପଚାରିବାକୁ ଅନୁମତି ଦିଅନ୍ତୁ । ଆପଣ ଦେଖିଥିବେ ଯେ ଡେସ୍‌ଡେମୋନା ଅନେକ ସମୟରେ ହାତରେ ନାନାରଙ୍ଗରେ ଚିତ୍ରିତ ଖଣ୍ଡିଏ ରୁମାଲ ଧରିଥାନ୍ତି । ସେଥିରେ କେତେ ଗୁଡ଼ିଏ ଗୋଲାପଜାମୁର ଚିତ୍ର ଅଙ୍କିତ ହୋଇଅଛି ।" ଏତିକି ଶୁଣିଲାମାତ୍ରେ ଓଥେଲୋ କହିଉଠିଲେ, "ହଁ, ସେ ରୁମାଲଟି ମୁଁ ଡେସ୍‌ଡେମୋନାଙ୍କୁ ଦେଇଥିଲି । ଖାଲି ସେତିକି ନୁହେଁ, ସେଇଟି ହେଉଛି ମୋର ପ୍ରଥମ ପ୍ରେମ-ଉପହାର ।" ଇୟାଗୋ କହିଲା, "କିନ୍ତୁ ମୁଁ ଆଜି ଦେଖିଲି ଯେ କାସିଓ ସେହି ରୁମାଲଟିରେ ନିଜ ମୁହଁ ପୋଛୁଥିଲେ ।" ଓଥେଲୋ ନିତାନ୍ତ କ୍ଷୁବ୍ଧ ହୋଇ କହିଲେ,

"ଯଦି ଏହା ସତ୍ୟ ହୋଇଥାଏ, ତେବେ ମୁଁ ନିଶ୍ଚୟ ଭୀଷଣ ପ୍ରତିଶୋଧ ନେବି । ତିନିଦିନ ମଧ୍ୟରେ କାସିଓର ମୃତ୍ୟୁ ସୁନିଶ୍ଚିତ । ଆଜି ସେ ପାପିଷ୍ଠୀର ମୃତ୍ୟୁ ପାଇଁ ମୋତେ ଉପାୟ ଦେଖିବାକୁ ହେବ ।"

ଇୟାଗୋର ସ୍ତ୍ରୀ ଡେସ୍‌ଡେମୋନାଙ୍କର ସହଚରୀଭାବରେ ଥିଲା । ତେଣୁ ତାଙ୍କ କକ୍ଷ ମଧ୍ୟରେ ସେ ଅନେକ ସମୟ ରହୁଥିଲା । ଦିନେ ଇୟାଗୋ ତାର ସ୍ତ୍ରୀକୁ ଭୟ ଦେଖାଇ କହିଲା—"ସେଇ ଚିତ୍ରବିଚିତ୍ର ରୁମାଲଟିକୁ ଲୁଚାଇ ଆଣି ମୋତେ ଦେବୁ । ଏ କଥା ଯେପରି ଅନ୍ୟ କେହି ନଜାଣେ ।" ଇୟାଗୋର ସ୍ତ୍ରୀ ଭୟରେ ସ୍ୱାମୀର କଥା ଅନୁଯାୟୀ ରୁମାଲଟି ଚୋରି କରି ଆଣି ସ୍ୱାମୀକୁ ଦେଇଥିଲା । ଇୟାଗୋ ଜଣେ ବିଶ୍ୱାସୀ ଲୋକ ହାତରେ ରୁମାଲଟି ଦେଇ କାସିଓଙ୍କ ଶୋଇବା ଘରେ ଖଟଉପରେ ପକାଇଦେବାକୁ କହିଥିଲା । କାସିଓ ନିଜ ବିଛଣା ଉପରେ ରୁମାଲଟି ଦେଖି ଭାବିଥିଲେ ଯେ କେହି ଭୁଲ-କ୍ରମେ ଏହାକୁ ତାଙ୍କ ଘରେ ଛାଡ଼ିଯାଇଛନ୍ତି; ସେ ଖୋଜିବାକୁ ଆସିଲେ ଦେଇପକାଇବେ । ଏହିପରି ବିଚାରି ସେ ରୁମାଲଟିକୁ ରଖିଥିଲେ ।

ଏବେ ଇୟାଗୋ ସେହି ରୁମାଲଟିକୁ ଆୟୁଧ କରି ତିନୋଟି ନିରୀହ ପ୍ରାଣୀଙ୍କର ସର୍ବନାଶର ପନ୍ଥା ଫିଟାଇଦେଲା । ଦୁଷ୍ଟ ଲୋକ ପକ୍ଷରେ ଜଗତରେ ଅସମ୍ଭବ କଅଣ ?

ଓଥେଲୋ ଇୟାଗୋ କଥାର ସତ୍ୟାସତ୍ୟ ଜାଣିବା ପାଇଁ ଘରକୁ ଯାଇ ଡେସ୍‌ଡେମୋନାଙ୍କୁ କହିଲେ, "ମୋର ମୁଣ୍ଡବ୍ୟଥା ହେଉଛି; ରୁମାଲଟା ଦେଲେ ମୁଣ୍ଡରେ ବାନ୍ଧିବି ।" ଡେସ୍‌ଡେମୋନା ଗୋଟିଏ ରୁମାଲ ବଢ଼ାଇଦେଲେ । କିନ୍ତୁ ଓଥେଲୋ ତାହା ଫେରାଇ ଦେଇ କହିଲେ, "ନା, ଅନ୍ୟ ରୁମାଲ ହେବ ନାହିଁ । ମୁଁ

ତୁମକୁ ପ୍ରଣୟ-ଉପହାରରୂପେ ଯେଉଁ ରୁମାଲଟି ଦେଇଥିଲି, ସେଇଟି ଦରକାର ।" ଡେସ୍‌ଡେମୋନାଙ୍କ ପାଖରେ ସେଇଟି ନ ଥିବାରୁ ସେ କହିଲେ, "ସେ ରୁମାଲଟି କେଉଁଠାରେ ହଜିଯାଇଛି ।" ଓଥେଲୋ କ୍ରୋଧରେ କହିଲେ, "କଅଣ ? ହଜିଯାଇଛି ? ତୁମ ପକ୍ଷରେ ଏହାକୁ ହଜାଇଦେବା ଘୋର ଅନ୍ୟାୟ । ସେ ବାଜେ ରୁମାଲ ନୁହେଁ । ଇଜିପ୍ଟର ଜଣେ ରମଣୀ ସେଇଟିକୁ ମୋର ମାଆଙ୍କୁ ଦେଇ କହିଥିଲା ଯେ ଯେତେ ଦିନଯାଏ ସେଇଟି ତାଙ୍କ ପାଖରେ ଥିବ ସେତେ ଦିନଯାଏ ସେ ପତିଙ୍କର ଆନ୍ତରିକ ପ୍ରେମରୁ ବଞ୍ଚିତ ହେବେ ନାହିଁ । ପ୍ରକୃତରେ ମୋର ପିତାମାତାଙ୍କ ମଧ୍ୟରେ ଆଜୀବନ ଗଭୀର ପ୍ରଣୟ ଥିଲା । ମାଆ ତାଙ୍କର ମୃତ୍ୟୁକାଳରେ ମୋତେ ସେହି ରୁମାଲଟି ଦେଇ କହିଥିଲେ—ତୁ ଯେବେ ବିଭା ହେବୁ, ଏଇଟିକୁ ତୋର ପତ୍ନୀକୁ ଦେବୁ । ଏହାକୁ ଜୀବନର ପ୍ରିୟତମ ପଦାର୍ଥ ମନେ କରିଥିବୁ । ମୁଁ ସେଥିପାଇଁ ତାହା ତୁମକୁ ଦେଇଥିଲି ।"

ଡେସଡେମୋନା କାତର ହୋଇ କହିଲେ, "ସତେ ? ଏହା ଏପରି ଗୋଟିଏ ଅଦ୍ଭୁତ ରୁମାଲ ? ହାୟ, ମୁଁ ତାକୁ କେଉଁଠାରେ ହଜାଇଦେଲି ? ଏବେ ଉପାୟ କଅଣ ?" ଡେସଡେମୋନା ବିଶ୍ବାସ କଲେ ଯେ ରୁମାଲଟି ହଜାଇବାଦ୍ୱାରା ସେ ନିଶ୍ଚୟ ସ୍ୱାମୀଙ୍କର ସ୍ନେହ ହରାଇ ଅଛନ୍ତି । ଏଣେ ଓଥେଲୋ ବାରମ୍ବାର ସେହି ରୁମାଲଟି ଖୋଜି ଦେବାକୁ କହୁଥାନ୍ତି । ତେଣେ ଡେସ୍‌ଡେ-ମୋନାଙ୍କର ଆଶଙ୍କା ଯେ ହୁଏତ ରୁମାଲଟି ଆଉ ମିଳିବ ନାହିଁ । ତେଣୁ ସେ ସ୍ୱାମୀଙ୍କ ମନକୁ ଭୁଲାଇବା ପାଇଁ ହସି ହସି କହିଲେ, "ତୁମେ ମୋତେ ଏପରି ଠକିଲେ ହେବ ନାହିଁ । ମୁଁ ତୁମକୁ କେତେ ଥର କହିଲିଣି ଯେ ସେ କାସିଓକୁ ପୁଣି ତାର ପୂର୍ବକାର୍ଯ୍ୟରେ ନିଯୁକ୍ତ କର; କିନ୍ତୁ ତୁମେ ମତେ ବରାବର ଅପେକ୍ଷା କରିବାକୁ କହି

ଆସୁଛ । ତୁମେ ତ ଜାଣ ଲୋକଟା କେତେ ବିଶ୍ୱାସୀ, ଆଉ ତୁମର କେତେ ଉପକାର କରିଛି । କହିବାକୁ ଗଲେ, ସେ ନଥିଲେ ତୁମେ ମୋତେ ପାଇ ନ ଥାନ୍ତ କି ମୁଁ ତୁମକୁ ପାଇ ନ ଥାନ୍ତି । ଆଜି ତା ବିଷୟରେ ଗୋଟାଏ ନିଷ୍ପତ୍ତି ନ କଲେ ମୁଁ ଛାଡ଼ିବି ନାହିଁ । ମୁଁ କାଳେ ସେଇ କଥା କହିବି ବୋଲି ତୁମେ ଆସି ରୁମାଲଟା ମାଗୁଛ ।"

ଡେସ୍‌ଡେମୋନା ଯେତିକି କାସିଓଙ୍କ ପ୍ରଶଂସା କରୁଥାନ୍ତି, ଓଥେଲୋଙ୍କ ମୁହଁରେ ସେତିକି ବିରକ୍ତି ପ୍ରକାଶ ପାଉଥାଏ । ଶେଷକୁ ସେ ଆଉ ସମ୍ଭାଳି ନ ପାରି ସେ ଘରୁ ହଠାତ୍ ବାହାରି ଚାଲିଗଲେ । ଡେସ୍‌ଡେମୋନା ସ୍ୱାମୀଙ୍କର ମନୋଭାବ ଦେଖି ଭାବିଲେ ଯେ ହୁଏତ କାସିଓଙ୍କ ପ୍ରଶଂସା ତାଙ୍କୁ ଭଲ ଲାଗିଲା ନାହିଁ କିମ୍ବା କାସିଓ ସହିତ ତାଙ୍କ ସମ୍ବନ୍ଧକୁ ସେ ସନ୍ଦେହଦୃଷ୍ଟିରେ ଦେଖୁଛନ୍ତି । କିନ୍ତୁ ସ୍ୱାମୀ ଯେ ତାଙ୍କୁ ସନ୍ଦେହ କରୁଥିବେ, ଏହା ସେ ସହଜେ ବିଶ୍ୱାସ କରି-ପାରିଲେ ନାହିଁ ।

ତେବେ ଓଥେଲୋଙ୍କର ଏହି ବିରକ୍ତିର କାରଣ କଅଣ ହୋଇପାରେ ? ତାଙ୍କର ଆଚରଣରେ ସେ ସ୍ୱାମୀଙ୍କୁ କିଛି ହେଲେ ଅବମାନନା କରିନାହାନ୍ତି । ତେବେ କଅଣ ଭେନିସ୍‌ରୁ କିଛି ଦୁଃସମ୍ବାଦ ଆସିଛି ? ଅଥବା କୌଣସି ଗୁରୁତର ରାଜକାର୍ଯ୍ୟରେ ସେ ବିବ୍ରତ ହୋଇପଡ଼ିଅଛନ୍ତି ? ତାଙ୍କର ସେ ମଧୁର ବ୍ୟବହାର କୁଆଡ଼େ ଗଲା ? ଡେସ୍‌ଡେମୋନା ଚିନ୍ତା କରିବାକୁ ଲାଗିଲେ, "ବୋଧହୁଏ ମୁଁ ଅସମ୍ଭବ କଥା ଆଶା କରୁଛି । ମନୁଷ୍ୟ ଚିରକାଳ ମନୁଷ୍ୟ; ସେ କଦାପି ଦେବତା ହୋଇ ନ ପାରେ । ବିବାହ ଦିନ ସେ ପତ୍ନୀକୁ ଯେଉଁ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେଖିଥାଏ, ଚିରଦିନ ସେହିପରି ଦେଖିବ ବୋଲି କିଏ ଆଶା କରିବ କାହିଁକି ? ହୁଏତ ମୁଁ

ଓଥେଲୋଙ୍କୁ ଭଲ ବୁଝୁଛୁ । ତାଙ୍କର ମୋ ପ୍ରତି ସ୍ନେହ ଊଣା ହେବ କାହିଁକି ? ସେ ମୋତେ ସନ୍ଦେହ କରିବେ ?'

ଓଥେଲୋ ଓ ଡେସ୍‌ଡେମୋନାଙ୍କର ପୁଣି ସାକ୍ଷାତ ହେଲା । ସେତେବେଳେ ଓଥେଲୋ କହିଲେ ଯେ ଡେସ୍‌ଡେମୋନା ତାଙ୍କ ପ୍ରତି ଆଉ ଅନୁରକ୍ତା ନୁହନ୍ତି; ସେ ପତିଙ୍କଠାରେ ବିଶ୍ୱାସଘାତକତା କରି ଅନ୍ୟ ଜଣେ ପୁରୁଷର ପ୍ରେମରେ ପଡ଼ିଛନ୍ତି । ସେ କୌଣସି ପୁରୁଷର ନାମ କହିଲେ ନାହିଁ; କିନ୍ତୁ ଏହା କହିସାରି ଘୋର ଦୁଃଖରେ କାନ୍ଦିବାକୁ ଲାଗିଲେ । ଡେସ୍‌ଡେମୋନା ଏଥିରେ ଅଧୀର ହୋଇପଡ଼ି ସ୍ୱାମୀଙ୍କୁ କହିଲେ, "ହାୟ ! ମୋର କି ଦୁର୍ଭାଗ୍ୟ ! ତୁମେ ଏପରି କାନ୍ଦୁଛ କାହିଁକି ?" ଓଥେଲୋ ଉତ୍ତର କଲେ, "ମୁଁ ଜଗତର ସବୁ ଦୁଃଖ ସହିପାରିଥାନ୍ତି । ଦାରିଦ୍ର୍ୟ, ରୋଗ, ଲୋକନିନ୍ଦା ଏସବୁ ମୋର କିଛି କରିପାରନ୍ତା ନାହିଁ । କିନ୍ତୁ ଡେସ୍‌ଡେମୋନା, ତୁମର ମୋ ପ୍ରତି ଯେଉଁ ବିଶ୍ୱାସଘାତକତା—ସେଥିରେ ମୋର ବକ୍ଷ ବିଦୀର୍ଣ୍ଣ ହୋଇଯାଉଛି । ତୁମେ ଗୋଟିଏ ପଲାଶଫୁଲ ପରି ବାହାରୁ ଏତେ ସୁନ୍ଦର ଦିଶୁଥିଲ; କିନ୍ତୁ ତୁମେ ଗୋଟିଏ ମହାକାଳ ଫଳ । ତୁମର ରୂପଟି ସିନା ସୁନ୍ଦର, ଭିତରେ ବିଷ ପୂରିରହିଛି । ତୁମଭଳି ଝିଅ ଜନ୍ମି ନଥିଲେ ପୃଥିବୀ କେତେ ସୁନ୍ଦର ହୋଇଥାନ୍ତା !" ଏହିପରି କହି ଓଥେଲୋ ବାହାରିଗଲେ ।

ନିରୀହ ଡେସ୍‌ଡେମୋନା ଏସବୁ ଶୁଣି ମୁଣ୍ଡରେ ବଜ୍ର-ପଡ଼ିଲାପରି ମନେକଲେ । ପତିଙ୍କର ଏହି ବୃଥା ସନ୍ଦେହରେ ସେ ଅବସନ୍ନ ହୋଇପଡ଼ିଲେ । ସେ ଜଣେ ଦାସୀକୁ କହିଲେ, "ମୋତେ ନେଇ ମୋର ବିଛଣାରେ ଶୁଆଇ ଦିଅ । ମୋ ଉପରେ ମୋ ବିବାହ ଦିନର ପୋଷାକଗୁଡ଼ିକ ଘୋଡ଼ାଇଦିଅ । ଡେସ୍‌ଡେମୋନା ବିଛଣାରେ ପଡ଼ିବାର ଅଳ୍ପ ସମୟ ମଧ୍ୟରେ

ନିଦ୍ରାଭିଭୂତ ହୋଇଗଲେ । କେତେକ ସମୟ ପରେ ଓଥେଲୋ ସେହି ଗୃହରେ ପ୍ରବେଶ କରି ଡେସ୍‌ଡେମୋନା ଶୋଇଥିବାର ଦେଖିଲେ । ସେତେବେଳକୁ ସେ ଡେସ୍‌ଡେମୋନାଙ୍କୁ ଅବିଶ୍ୱାସିନୀ ଓ ଅସତୀ ବୋଲି ସ୍ଥିର କରି ତାଙ୍କୁ ହତ୍ୟା କରିବାକୁ ଦୃଢ଼ପ୍ରତିଜ୍ଞ । ସେ ଗୃହ ମଧ୍ୟରେ ପ୍ରବେଶ କରି କହିଲେ, "ହେ ନିଷ୍କଳଙ୍କ ତାରାରାଜି, ତୁମେମାନେ ସାକ୍ଷୀ । ମୁଁ ଡେସ୍‌ଡେମୋନାକୁ ହତ୍ୟା କରୁଛି; କାରଣ ସେ ଅସତୀ । କିନ୍ତୁ ମୁଁ ତାର ରକ୍ତପାତ କରିବିନାହିଁ କିମ୍ବା ତାର ଏହି ଶୁଭ୍ର ମସୃଣ ଶରୀରକୁ ବିକୃତ କରିବି ନାହିଁ । ପ୍ରଥମେ ଘରର ଏହି ଆଲୋକଟି ନିର୍ବାପିତ କରି ପରେ ତାର ପ୍ରାଣପ୍ରଦୀପକୁ ନିର୍ବାପିତ କରିବି । ଆଲୋକ ପୁନର୍ବାର ପ୍ରଜ୍ୱଳିତ ହେବ; କିନ୍ତୁ ତାର ଜୀବନଦୀପ ଆଉ ଜଳିବ ନାହିଁ । ଏ ଗୋଲାପଫୁଲଟି ଥରେ ବୃନ୍ତଚ୍ୟୁତ ହେଲେ ଆଉ ସେଥିରେ ରସ ସଞ୍ଚାର ହେବନାହିଁ । ତାହାକୁ ଛିନ୍ନ କରିବା ପୂର୍ବରୁ ଥରେ ତାହାର ମାଧୁରୀ ଉପଭୋଗ କରିଏ ।" ଏହିପରି କହି ସେ ଡେସ୍‌ଡେମୋନାଙ୍କୁ ଚୁମ୍ବନ କଲେ ।

ହଠାତ୍ ଡେସ୍‌ଡେମୋନା ନିଦରୁ ଉଠିପଡ଼ିଲେ ଓ ପତିଙ୍କୁ ଶୟନ କରିବାକୁ ଅନୁରୋଧ କଲେ । କିନ୍ତୁ ଓଥେଲୋ କ୍ରୁଦ୍ଧ ସ୍ୱରରେ କହିଲେ, "ତୋର ଯଦି ପାପର ପ୍ରାୟଶ୍ଚିତ୍ତ ପାଇଁ ଈଶ୍ୱରଙ୍କୁ କ୍ଷମା ମାଗିବାର ଥାଏ, ତେବେ ଶୀଘ୍ର ପ୍ରାର୍ଥନା କରିନେ । ତୋର ମୃତ୍ୟୁ ସନ୍ନିକଟ । ତୋତେ ହତ୍ୟା କରିବାକୁ ମୁଁ ପ୍ରସ୍ତୁତ ।"

ଡେସଡେମୋନା କିଛି ବୁଝି ନ ପାରି କହିଲେ, "ତୁମେ ଏ କଅଣ କହୁଛ ?"

ଓଥେଲୋ କହିଲେ, "ଯାହା କହୁଛି ତାହା ଅକ୍ଷରେ ଅକ୍ଷରେ ସତ୍ୟ । ତୋର ପାପ ଜଘନ୍ୟ । ମୃତ୍ୟୁ ବିନା ତାର ଅନ୍ୟ ଦଣ୍ଡ ନାହିଁ ।"

ଡେସ୍‌ଡେମୋନା—ଏ କଅଣ, ତୁମର ଚକ୍ଷୁ ଏପରି ଆରକ୍ତ ! ଦେଖିଲେ ଭୟ ହେଉଛି । ମୁଁ ନିଷ୍ପାପ; ତୁମ ଛଡ଼ା ଆଉ କାହାରିକୁ ମୁଁ ହୃଦୟରେ ସ୍ଥାନ ଦେଇନାହିଁ । ତୁମକୁ ଭଲପାଇବାପାଇଁ ମୋର ମରଣ ହେବ, ଏ ବଡ଼ ଅସମ୍ଭବ ।

ଓଥେଲୋ—ଚୁପ୍ କର । ତୋର ଛଳନାରେ ମୁଁ ଆଉ ଭୁଲି ନ ପାରେ । କହ, ତୁ ମୋର ପ୍ରେମର ଉପହାର ସେଇ ରୁମାଲ କାସିଓକୁ ଦେଇନ ହୁଁ ?

ଡେସ୍‌ଡେମୋନା—ନାଁ, ମୁଁ କେବେ କାହାରିକୁ ସେ ରୁମାଲ ଦେଇନାହିଁ । ତୁମେ କାସିଓକୁ ଡାକି ପଚାରିପାର ।

ଓଥେଲୋ—ମୃତ୍ୟୁଶଯ୍ୟାରେ ମଧ୍ୟ ପୁଣି ମିଥ୍ୟା ! ପାପ ସ୍ୱୀକାର କରି ତୋର ମରିବା ଉଚିତ । ମୁଁ ସେ ରୁମାଲ ତା ହାତରେ ଦେଖିଛି ।

ଡେସ୍‌ଡେମୋନା ଯେତେ ଶପଥ କରି କହିଲେ, ଯେତେ ଅନୁରୋଧ କଲେ ସବୁ ବିଫଳ ହେଲା । ଓଥେଲୋ ଦୃଢ଼ ମୁଷ୍ଟିରେ ଡେସ୍‌ଡେମୋନାଙ୍କ ଗଳାକୁ ଚିପିଧରିଲେ । ସେ ମୃତବତ୍ ପଡ଼ିରହିଲେ ।

ଏହି ସମୟରେ ଇୟାଗୋର ସ୍ତ୍ରୀ ଆସି ଓଥେଲୋଙ୍କୁ ଜଣାଇଲା ଯେ ଜଣେ ଭେନିସୀୟ ଯୁବକକୁ କାସିଓ ହତ୍ୟା କରିଛନ୍ତି । ଏଣେ ଡେସ୍‌ଡେମୋନା ମୁମୂର୍ଷୁ ସ୍ୱରରେ କହିଲେ, "ବିନା ଦୋଷରେ ମୋର ପ୍ରାଣ ଗଲା; କିନ୍ତୁ ମୋର ପତି ନିର୍ଦ୍ଦୋଷ ।" ଏତିକି କହି ସେ ପ୍ରାଣତ୍ୟାଗ କଲେ ।

କାସିଓଙ୍କୁ ହତ୍ୟା କରିବାପାଇଁ ଇୟାଗୋ ଜଣେ ଲୋକକୁ ନିଯୁକ୍ତ କରିଥିଲା । ସେ ଏହି ଉଦ୍ୟମରେ ସଫଳ ହୋଇ ପାରି ନ ଥିଲା; କେବଳ ତାଙ୍କୁ ଆହତ କରିଥିଲା । କାଳେ ନିଜର ଦୁଷ୍କୃତି

ପ୍ରକାଶ ପାଇବ ଏହି ଉପୟରେ ଇୟାଗୋ ନିଜର ଘୋଡ଼ା 'ଲୋକଟି (ରଡ଼େରିଗୋ)'କୁ ହତ୍ୟା କଲା । ଏହି ଲୋକଟିର ପକେଟରୁ କେତେ ଖଣ୍ଡି ଚିଠି ମିଳିଲା । ସେଥିରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ କାସିଓ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଇୟାଗୋର ଷଡ଼ଯନ୍ତ୍ର ଫଳରେ ଏସବୁ ଘଟିଛି । କାସିଓ ଆସି ଓଥେଲୋଙ୍କ ନିକଟରେ କ୍ଷମା ପ୍ରାର୍ଥନା କରି ନିଜର ଅପରାଧ କଅଣ ଜାଣିବାକୁ ଚାହିଁଲେ ।

ଓଥେଲୋ ଏବେ ଜାଣିପାରିଲେ ଯେ ସେ ଭ୍ରମରେ ପଡ଼ି ନିଜର ସତୀ ସାଧ୍ୱୀ ପତିବ୍ରତା ପତ୍ନୀ ଡେସ୍‌ଡେମୋନାଙ୍କୁ ହତ୍ୟା କରିଅଛନ୍ତି । ଏହି ଅନ୍ୟାୟ କରିଥିବାରୁ ସେ ନିଜକୁ ଘୋର ପାପୀ ବୋଲି ମନେକଲେ । ଜୀବନ ତାଙ୍କୁ ଦୁର୍ବହ ବୋଧ ହେଲା । ସେ ଡେସ୍‌ଡେ-ମୋନାଙ୍କ ନିକଟରେ ତରବାରିଦ୍ୱାରା ଆତ୍ମହତ୍ୟା କରି ନିଜ ପାପର ପ୍ରାୟଶ୍ଚିତ୍ତ କଲେ ।

ସଇତାନ ଇୟାଗୋ କଠୋର ଦଣ୍ଡରେ ଦଣ୍ଡିତ ହେଲା ।

ଭେନିସ୍‌ରେ ସମ୍ବାଦ ପହଞ୍ଚିଲା ଯେ ଦୁର୍ଦ୍ଧର୍ଷ ବୀର ଓଥେଲୋ ଆଉ ଇହଧାମରେ ନାହାନ୍ତି କି ଭେନିସ୍‌ର ଅଦ୍ୱିତୀୟା ଗୁଣବତୀ ରମଣୀ ଡେସ୍‌ଡେମୋନା ନାହାନ୍ତି ।



# ରୋମିଓ-ଜୁଲିଏଟ

ଇଟାଲି ରାଜ୍ୟର ଭେରୋନା ନଗରରେ କାପିଉଲେଟ୍ ଓ ମଣ୍ଟେଗ ନାମରେ ଦୁଇଟି ପ୍ରସିଦ୍ଧ ଧନୀ ପରିବାର ବାସ କରୁଥିଲେ । ଏହି ଦୁଇଟି ପରିବାର ମଧ୍ୟରେ ବହୁକାଳ ଧରି ପୁରୁଷାନୁକ୍ରମେ ଶତ୍ରୁତା ଲାଗିରହିଥିଲା । ଏହି ଶତ୍ରୁତା ଯେ କେବଳ ଏହି ଦୁଇଟି ପରିବାରର ଲୋକଙ୍କ ମଧ୍ୟରେ ଆବଦ୍ଧ ରହିଥିଲା, ତାହା ନୁହେଁ; ଏହା କ୍ରମଶଃ ଦୁଇ ପରିବାରର ବନ୍ଧୁବର୍ଗ ଓ ଭୃତ୍ୟମାନଙ୍କ ମଧ୍ୟରେ ମଧ୍ୟ ବ୍ୟାପି ଯାଇଥିଲା । ଏହି ଶତ୍ରୁତା ଫଳରେ ଦୈବାତ୍ ଦୁଇ ପରିବାରର ଭୃତ୍ୟଙ୍କର ମଧ୍ୟ ଦେଖାହେଲେ ସେମାନେ ପରସ୍ପର କଳହ କରିବାକୁ କୁଣ୍ଠିତ ହେଉ ନ ଥିଲେ । ସମୟେ ସମୟେ ଏହି କଳହ କୁବାକ୍ୟର ସୀମା ଅତିକ୍ରମ କରି ରକ୍ତପାତ ପର୍ଯ୍ୟନ୍ତ ଯାଉଥିଲା । ବାଟଘାଟରେ ଏପରି ଦୁଇ ପରିବାରର ଭୃତ୍ୟମାନଙ୍କର କଳହ ଓ ସମୟେ ସମୟେ ରକ୍ତପାତ ଘଟୁଥିବାରୁ ଭେରୋନାରେ ଶାନ୍ତି ରହୁ ନ ଥିଲା ।

ଦିନେ ରାତିରେ କାପିଉଲେଟ ପରିବାରର ବୃଦ୍ଧ କର୍ତ୍ତା ନିଜ ଘରେ ଏକ ବିରାଟ ଭୋଜର ଆୟୋଜନ କଲେ । ଭେରୋନାର ସମ୍ଭ୍ରାନ୍ତ ପରିବାରମାନଙ୍କର ସମସ୍ତ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ଏହି ଭୋଜକୁ ନିମନ୍ତ୍ରିତ ହୋଇ ଆସିଥିଲେ; କିନ୍ତୁ ମଣ୍ଟେଗ ପରିବାର କିମ୍ବା ତାଙ୍କର ସମର୍ଥକ କାହାରିକୁ ଉକ୍ତ ଭୋଜକୁ ନିମନ୍ତ୍ରଣ କରାଯାଇ ନ ଥିଲା । କାପିଉଲେଟ୍ ପରିବାରର କର୍ତ୍ତା ଆମନ୍ତ୍ରିତ ଅତିଥି ଅଭ୍ୟାଗତ-ମାନଙ୍କର ଉପଯୁକ୍ତ ଅଭ୍ୟର୍ଥନା କରି ମିଷ୍ଟ ବ୍ୟବହାରଦ୍ୱାରା ସେମାନଙ୍କୁ ଆପ୍ୟାୟିତ କରିବାକୁ ଲାଗିଲେ ।

ମଣ୍ଟେଗ ପରିବାରର ବୃଦ୍ଧ କର୍ତ୍ତାଙ୍କର ପୁତ୍ର ରୋମିଓ ଏହି ଭୋଜରେ ଛଦ୍ମବେଶରେ ଉପସ୍ଥିତ ଥିଲେ । ଜଣେ ମଣ୍ଟେଗ ପକ୍ଷରେ ଏପରି ଭାବରେ ଶତ୍ରୁ ଗୃହର ଭୋଜରେ ଉପସ୍ଥିତ ହେବା ନିତାନ୍ତ ବିପଜ୍ଜନକ ଜାଣି ମଧ୍ୟ ରୋମିଓ ବେନଭୋଲିଓ ନାମକ ଜଣେ ବନ୍ଧୁଙ୍କର ପ୍ରଗାଢ଼ ଅନୁରୋଧରେ ସେହି ବିପଦକୁ ବରଣ କରି ନେଇଥିଲେ ଏବଂ ଏପରି କରିବାର କାରଣ ଥିଲା ।

ରୋଜାଲିନ ନାମ୍ନୀ ଏକ ଯୁବତୀଙ୍କ ପ୍ରତି ରୋମିଓଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା; କିନ୍ତୁ ରୋଜାଲିନ୍‌ଙ୍କର ରୋମିଓଙ୍କ ପ୍ରତି ଆଦୌ ଆସକ୍ତି ନଥିଲା । ବରଂ ସେ ରୋମିଓଙ୍କୁ ଘୃଣା କରୁଥିଲେ; କେବେ-ହେଲେ ତାଙ୍କ ସହିତ ଆଳାପ ପର୍ଯ୍ୟନ୍ତ କରୁ ନଥିଲେ । ତଥାପି ରୋମିଓ ରୋଜାଲିନ୍‌ଙ୍କୁ ଭୁଲି ପାରି ନଥିଲେ । ସେ ଆହାର ନିଦ୍ରା ତ୍ୟାଗକରି କେବଳ ରୋଜାଲିନଙ୍କ ବିଷୟ ଚିନ୍ତା କରୁଥିଲେ । ଦିନକୁ ଦିନ ଏହି ଚିନ୍ତାରେ ତାଙ୍କର ଶରୀର ଶୁଷ୍କ ହୋଇ ଆସୁଥିଲା । ରୋମିଓଙ୍କର ପ୍ରିୟବନ୍ଧୁ ବେନଭୋଲିଓ ମନେ କଲେ ଯେ ନାନା ଧରଣରେ, ନାନା ପ୍ରକୃତିର ସୁନ୍ଦରୀ ରମଣୀମାନଙ୍କ ସଙ୍ଗେ ମିଳାମିଶା କଲେ ରୋମିଓ ରୋଜାଲିନ୍‌ଙ୍କ କଥା ଭୁଲିଯିବେ । ସେ ଜାଣିଥିଲେ ଯେ କାପିଉଲେଟ୍‌ଙ୍କ ଭୋଜରେ ସୁନ୍ଦରୀ ରମଣୀମାନେ ଯୋଗ ଦେବେ । ତେଣୁ ସେ ରୋମିଓଙ୍କୁ ସେଠାକୁ ଯିବାପାଇଁ ପ୍ରବର୍ତ୍ତାଇ ଥିଲେ । ସେ କହିଲେ, "ବନ୍ଧୁ ରୋମିଓ, ତୁମେ ମନେକର ଯେ ରୋଜାଲିନ୍ ପରି ସୁନ୍ଦରୀ ସାରା ଜଗତରେ ନାହାନ୍ତି । କିନ୍ତୁ ଆଜି କାପିଉଲେଟ୍‌ଙ୍କ ଭୋଜରେ ଏପରି ସୁନ୍ଦରୀ ରମଣୀମାନଙ୍କୁ ଦେଖିବାକୁ ପାଇବ ଯେ ସେମାନଙ୍କ ତୁଳନାରେ ତୁମର ରୋଜାଲିନ୍ 'ହଂସମଧ୍ୟେ ବକୋ ଯଥା ।" ଶେଷରେ ରୋମିଓ, ବେନଭୋଲିଓ ଓ ସେମାନଙ୍କର

ବନ୍ଧୁ ମର୍କ୍ୟୁସିଓ ସମସ୍ତେ ଛଦ୍ମବେଶରେ ସେହି ଭୋଜିରେ ଉପସ୍ଥିତ ହୋଇଥିଲେ ।

କାପିଉଲେଟ ପରିବାରର କର୍ତ୍ତା ଏହି ଛଦ୍ମବେଶୀ ରୋମିଓ ଏବଂ ତାଙ୍କର ବନ୍ଧୁଦ୍ୱୟଙ୍କୁ ଚିହ୍ନି ନପାରି ଅନ୍ୟମାନଙ୍କ ସହିତ ସେମାନଙ୍କୁ ମଧ୍ୟ ଅଭ୍ୟର୍ଥନା ଜଣାଇଲେ ଏବଂ ଏମାନଙ୍କୁ ତରୁଣୀ-ମାନଙ୍କ ନିକଟକୁ ଡାକିନେଇ ସେମାନଙ୍କ ସହିତ ନୃତ୍ୟରେ ଯୋଗ ଦେବାକୁ ଅନୁରୋଧ କଲେ । ବୃଦ୍ଧ ହେଲେହେଁ ସେ ଖୁବ୍ ଆମୋଦ-ପ୍ରିୟ ଓ ପରିହାସରସିକ । ସେ ପରିହାସ କରି କହିଲେ, "ଦିନେ ମୁଁ ମଧ୍ୟ ତୁମରି ଭଳି ଯୁବକ ଥିଲି । ଯୁବତୀମାନଙ୍କ ସଙ୍ଗରେ କେତେ ପ୍ରେମାଳାପ କରିଛି । ଏବେ ଯାଅ, ଏହି ତରୁଣୀମାନଙ୍କ ସଙ୍ଗେ ନୃତ୍ୟଗୀତରେ ଯୋଗ ଦେଇ ଆନନ୍ଦ ଅନୁଭବ କର ।"

ହଠାତ୍ ନୃତ୍ୟମଧ୍ୟରେ ଜଣେ ଅସାମାନ୍ୟ ରୂପଲାବଣ୍ୟମୟୀ ଯୁବତୀଙ୍କୁ ଦେଖି ରୋମିଓ ଆତ୍ମହରା ହୋଇପଡ଼ିଲେ । ଏଭଳି ସୁନ୍ଦରୀ ଏଥିପୂର୍ବରୁ କେବେ ତାଙ୍କର ଦୃଷ୍ଟିଗୋଚର ହୋଇନଥିଲା । ତାଙ୍କର ରୂପଚ୍ଛଟାରେ ମଣିମାଣିକ୍ୟ ନିସ୍ତେଜ ବୋଧ ହେଉଥିଲା । ଅନ୍ୟ ରମଣୀମାନେ ତାଙ୍କର ସୌନ୍ଦର୍ଯ୍ୟ ନିକଟରେ ନିଷ୍ପ୍ରଭ ହୋଇ-ଯାଉଥିଲେ । ରୋମିଓ ଏତେ ବିଭୋର ହୋଇଯାଇଥିଲେ ଯେ ସେ ନିଜକୁ ଭୁଲିଯାଇ ଏହି ରମଣୀର ପ୍ରଶଂସା ଗାନ କରିବାକୁ ଲାଗିଲେ ।

କାପିଉଲେଟ୍‌କର୍ତ୍ତାଙ୍କର ଜଣେ ଭ୍ରାତୃଷ୍ପୁତ୍ର ସେଠାରେ ଉପସ୍ଥିତ ଥିଲେ । ତାଙ୍କର ନାମ ଟାଇବାଲ୍ଟ । ସେ ରୋମିଓଙ୍କର ସ୍ୱର ଶୁଣି ତାଙ୍କୁ ଚିହ୍ନିପାରିଲେ । ଶତ୍ରୁ ପରିବାରର ଜଣେ ଛଦ୍ମବେଶରେ ଆସି ତାଙ୍କ ଭୋଜିରେ ଉପସ୍ଥିତ ହୋଇଥିବାର ଦେଖି ସେ କ୍ରୋଧାନ୍ଧ

ହୋଇପଡ଼ିଲେ । ସେ ସ୍ୱଭାବତଃ କ୍ରୁଦ୍ଧ ପ୍ରକୃତିର ଯୁବକ ଥିଲେ । ତେଣୁ ସେ ଧୈର୍ଯ୍ୟ ଧରି ନପାରି ରୋମିଓଙ୍କୁ ଯଥେଚ୍ଛା ଭର୍ତ୍ସନା କରି-ବାକୁ ଲାଗିଲେ ଏବଂ ତାଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ଆକ୍ରମଣ କରିବାକୁ ବାହାରିଲେ । କିନ୍ତୁ ଏହି ସମୟରେ ଗୃହର କର୍ତ୍ତା ମହୋଦୟ ଆସି ଟାଇବାଲ୍‌ଟଙ୍କୁ କହିଲେ, "ଦେଖ, ଏପରି କରିବା ଅନ୍ୟାୟ । ଅତିଥିଭାବରେ ସେମାନଙ୍କୁ ସମ୍ମାନ କରିବା ଆମର କର୍ତ୍ତବ୍ୟ । ବିଶେଷତଃ ରୋମିଓଙ୍କର ଆଚରଣରେ କୌଣସି ଅଭଦ୍ରତା ପ୍ରକାଶ ପାଉନାହିଁ । ଭେରୋନାରେ ସମସ୍ତଙ୍କ ମୁଖରୁ ତାଙ୍କର ପ୍ରଶଂସା ଶୁଣିବାକୁ ମିଳେ । ତାଙ୍କର ସଦ୍‌ଗୁଣ ଛଡ଼ା ମୁଁ ଅନ୍ୟ କିଛି ଶୁଣିବାକୁ ପାଉନାହିଁ । ତେଣୁ ତୁମ ପକ୍ଷରେ ତାଙ୍କପ୍ରତି ଏପ୍ରକାର ବ୍ୟବହାର ଅନୁଚିତ ।"

ଟାଇବାଲ୍‌ଟ ବୃଦ୍ଧଙ୍କର ବାକ୍ୟରେ ନିଜର କ୍ରୋଧ ସମ୍ବରଣ କରି ନୀରବ ରହିଲେ; କିନ୍ତୁ ରୋମିଓଙ୍କ ପ୍ରତି ତାଙ୍କର ପ୍ରତିହିଂସା ମନ ମଧ୍ୟରୁ ଗଲାନାହିଁ । ଅନ୍ୟ କେତେବେଳେ ସୁଯୋଗ ଦେଖି ରୋମିଓଙ୍କୁ ସେ ଉପଯୁକ୍ତ ଦଣ୍ଡ ଦେବେ ବୋଲି ମନେ ମନେ ସ୍ଥିର କଲେ ।

ନୃତ୍ୟଗୀତ ଶେଷ ହେଲାପରେ ସେହି ଅପରୂପ ସୁନ୍ଦରୀ ଯେଉଁଠାରେ ଛିଡ଼ା ହୋଇଥିଲେ, ରୋମିଓ ସେହି ସ୍ଥାନକୁ ଗଲେ । ଯେତିକ ସେ ଦେଖୁଥାନ୍ତି ସେତିକ ଆତ୍ମବିସ୍ମୃତ ହୋଇପଡ଼ୁଥାନ୍ତି । ତତ୍ପରେ ସେ ଧୀରେ ଧୀରେ ଯାଇ ସେହି ସୁନ୍ଦରୀଙ୍କ ନିକଟରେ ଉପସ୍ଥିତ ହେଲେ । ଛଦ୍ମବେଶରେ ଥିବାରୁ ସେ ଏହି ସୁନ୍ଦରୀଙ୍କ ସଙ୍ଗେ ପ୍ରେମାଳାପ କରିବାର ସୁବିଧା ପାଇଲେ । ଦୁହିଁଙ୍କର କଥାବାର୍ତ୍ତା ଚାଲିଥିବା ସମୟରେ ତାଙ୍କର ମାଆଙ୍କର ଡାକରା ପାଇ ସେହି ସୁନ୍ଦରୀ ସେଠାରୁ ଚାଲିଗଲେ । ଇତ୍ୟବସରରେ ରୋମିଓ ତାଙ୍କର ପରିଚୟ

ପରସ୍ପର ଜାଣିପାରିଥିଲେ ଯେ ଏହି ଯେଉଁ ଅନନ୍ୟସୁନ୍ଦରୀ ତାଙ୍କର ମନପ୍ରାଣ ଅଧିକାର କରି ବସିଛନ୍ତି, ସେ ହେଉଛନ୍ତି ଜୁଲିଏଟ; କାପିଉଲେଟ୍ କର୍ତ୍ତାଙ୍କର ଏକମାତ୍ର କନ୍ୟା ଓ ଉତ୍ତରାଧିକାରିଣୀ। ଏହା ଜାଣିଲାମାତ୍ରେ ତାଙ୍କର ମନ ବିଷାଦରେ ପୂର୍ଣ୍ଣ ହୋଇଗଲା। ଅଜ୍ଞାତସାରରେ ଶତ୍ରୁକନ୍ୟାର ପ୍ରେମରେ ଆବଦ୍ଧ ହୋଇଥିବାରୁ ସେ ଅନୁତାପ କଲେ; କିନ୍ତୁ ସେ ପ୍ରେମ-ବନ୍ଧନରୁ ନିଜକୁ ମୁକ୍ତ କରି ପାରିଲେ ନାହିଁ। ଅପରପକ୍ଷରେ ଜୁଲିଏଟ୍‌ଙ୍କର ଅବସ୍ଥା ମଧ୍ୟ ତଦ୍ରୂପ। ସେ ରୋମିଓଙ୍କୁ ପ୍ରାଣ ସମର୍ପଣ କରିସାରିଥିଲେ। ଯେତେବେଳେ ସେ ଜାଣିଲେ ଯେ ଏହି ଛଦ୍ମବେଶୀ ଯୁବକ ହେଉଛନ୍ତି ରୋମିଓ, ସେମାନଙ୍କର ଚିରଶତ୍ରୁ ମଣ୍ଟେଗକର୍ତ୍ତାଙ୍କର ପୁତ୍ର, ସେତେବେଳେ ସେ ମଧ୍ୟ ଦୁଃଖରେ ଅଭିଭୂତ ହୋଇପଡ଼ିଲେ। ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ ଯେଉଁ ମଣ୍ଟେଗ ପରିବାର ସଙ୍ଗେ ଚିରଶତ୍ରୁତା ରହିଆସିଅଛି, ଯାହାକୁ ଦେଖିଲେ ଘୃଣା ବ୍ୟତୀତ ଅନ୍ୟ କୌଣସି ଭାବ ଆସି ନପାରେ, ତାହାରି ନିକଟରେ ସେ ମନପ୍ରାଣ ବିକ୍ରୟ କରିଦେବେ। ଏତେ ଶୀଘ୍ର ସେ ଦୁଇଜଣଙ୍କ ମଧ୍ୟରେ କିପରି ପ୍ରଣୟ ଜାତ ହେଲା ସେ ବୁଝିପାରିଲେ ନାହିଁ; କିନ୍ତୁ ପ୍ରେମ ନିକଟରେ ଶତ୍ରୁ-ମିତ୍ରର ଭେଦ କାହିଁ ଆସିବ ?

ରାତି ଦ୍ୱିପ୍ରହର ହେଲା। ରୋମିଓ ବନ୍ଧୁବାନ୍ଧବଙ୍କ ସହିତ କାପିଉଲେଟ୍‌ଗୃହରୁ ନିଷ୍କ୍ରାନ୍ତ ହେଲେ। କିଛି ଦୂର ଯିବାପରେ ବନ୍ଧୁବାନ୍ଧବ ଦେଖିଲେ ଯେ ରୋମିଓ ସେମାନଙ୍କ ସଙ୍ଗରେ ନାହାନ୍ତି। ରୋମିଓ ବନ୍ଧୁବାନ୍ଧବଙ୍କ ସଙ୍ଗରେ ସ୍ୱଗୃହକୁ ବାହାରିଥିଲେ ସତ; କିନ୍ତୁ ତାଙ୍କର ମନ ଜୁଲିଏଟଙ୍କ ନିକଟରେ ରହିଥିଲା। ତେଣୁ ସେ ବନ୍ଧୁବାନ୍ଧବଙ୍କୁ କିଛି ନ ଜଣାଇ ପଥମଧ୍ୟରୁ ଫେରିଆସି ଜୁଲିଏଟ୍‌ଙ୍କ ଉପବନ ନିକଟରେ ଉପସ୍ଥିତ ହେଲେ। ଅନୁଚ୍ଚ ପ୍ରାଚୀରଟି ଡେଇଁପଡ଼ି ସେ

ଉପବନ ମଧ୍ୟରେ ପ୍ରବେଶ କଲେ । ଅଳ୍ପ ସମୟ ପରେ ସୁନ୍ଦରୀ ଜୁଲିଏଟ ନିଜ ଶୟନ ଗୃହର ଝରକା ନିକଟକୁ ଯାଇ ଛିଡ଼ାହେଲେ । ଗୃହର ଆଲୋକରେ ତାଙ୍କର ଉଜ୍ଜ୍ୱଳ ରୂପ ଝଲସିପଡୁଥିଲା । ରୋମିଓ ବଗିଚା ମଧ୍ୟରେ ରହି ଅପଲକ ନେତ୍ରରେ ସେହି ରୂପସୁଧା ପାନ କରିବାକୁ ଲାଗିଲେ । ତାଙ୍କର ମନେ ହେଲା, ସତେ ଯେପରି ଜୁଲିଏଟ୍‌ଙ୍କ ଶରୀରର ଜ୍ୟୋତି ନିକଟରେ ଚନ୍ଦ୍ରର ପ୍ରଭା ମ୍ଳାନ ଦେଖା-ଯାଉଛି । ଜୁଲିଏଟ ଗଣ୍ଡଦେଶରେ ହାତ ରଖି କଅଣ ଚିନ୍ତା କରୁ-ଥିଲେ । ସେ ମନେ କରିଥିଲେ ଯେ ସେ ଏକାକିନୀ; ନିକଟରେ ଅନ୍ୟ କେହି ନାହିଁ । ତେଣୁ ସେ ଦୀର୍ଘଶ୍ୱାସ ପକାଇ ମନକୁ ମନ କହିଲେ, 'ହାୟ, ମୋ ଅଦୃଷ୍ଟ !' ଏହି ପଦଟି ଶୁଣିଲାମାତ୍ରେ ରୋମିଓଙ୍କ ମନପ୍ରାଣ ଶୀତଳ ହୋଇଗଲା; ସତେ ଯେପରି କିଏ ତାଙ୍କ ଉପରେ ଅମୃତ ବର୍ଷା କରିଦେଲା । ସେ ନମ୍ର ସ୍ୱରରେ କହିଲେ, "ଆଉ ଥରେ ସେହି ପଦଟି ଉଚ୍ଚାରଣ କର । ତୁମେ ତ ମାନବୀ ନୁହଁ, ସ୍ୱର୍ଗର ଅପ୍‌ସରୀ । ସ୍ୱର୍ଗରେ ରହି ତୁମେ ମୋ ମସ୍ତକ ଉପରେ ବିହାର କରୁଛ । ମର୍ତ୍ତ୍ୟପୁରର କେହି ତୁମ ଉପରେ ଦୃଷ୍ଟିପାତ କରିବା ସମ୍ଭବପର ନୁହେଁ ।" ସେହିପରି ଜୁଲିଏଟ କହୁଥିଲେ, "ହାୟ, ମୋ ରୋମିଓ ! ରୋମିଓ ! ତୁମେ ଆଉ କେହି ନ ହୋଇ ରୋମିଓ ହେଲ କାହିଁକି ? ମୋ ପ୍ରତି ଦୟା କରି ତୁମେ ତୁମର ପିତାଙ୍କୁ ଅସ୍ୱୀକାର କର; ତୁମର ଏହି ନାମକୁ ତ୍ୟାଗ କର । ଯଦି ଏହା କରି ନ ପାର, ତେବେ ଶପଥ କର ଯେ ତୁମେ ମୋତେ ଚିରଦିନ ଭଲ ପାଇବ । ତାହା ହେଲେ ମୁଁ ଏ ଜନ୍ମରେ ଆଉ କାପିଉଲେଟ୍ ପରିବାର ସହିତ କିଛି ସମ୍ବନ୍ଧ ରଖିବି ନାହିଁ ।"

ରୋମିଓ ଏହି କଥାଗୁଡ଼ିକ ଶୁଣି ଆନନ୍ଦରେ ଉନ୍ମତ୍ତପ୍ରାୟ । ସେ ଏହାର ଉପଯୁକ୍ତ ଉତ୍ତର ଦେବାକୁ ଇଚ୍ଛା କରୁଥିଲେହେଁ

ଜୁଲଏଟ ଆଉ କଅଣ କହିବେ ଶୁଣିବା ପାଇଁ ଉଦ୍‌ଗ୍ରୀବ ହୋଇ ରହିଲେ ।

ଏଣେ ଜୁଲଏଟ ଭାବୁଥିଲେ ଯେ ସେଠାରେ ତାଙ୍କ ବ୍ୟତୀତ ଆଉ କେହି ନାହାଁନ୍ତି । ତେଣୁ ସେ ସ୍ୱଚ୍ଛନ୍ଦରେ ମନର ଭାବ କହିବାକୁ ଲାଗିଲେ—"ରୋମିଓ ଏ ତୁମର ଘୋର ଅନ୍ୟାୟ ଯେ ତୁମେ ରୋମିଓଙ୍କ ପୁତ୍ରରୂପେ ଜନ୍ମ ହୋଇଛ, ମେଣ୍ଟେଗ ପରିବାରରେ ଜନ୍ମ ହୋଇଛ । ତୁମକୁ କଅଣ ଅନ୍ୟ କୌଣସି ନାମ ମିଳିଲା ନାହିଁ ? ସେ କୁତ୍ସିତ ନାମଟାକୁ ତ୍ୟାଗ କରିବାରେ କ୍ଷତି କଅଣ ? ନାମଟା କଅଣ ତୁମର ଗୋଟାଏ ଅଂଶ ? ତାହାହେଲେ ତ ମୁଁ ସମ୍ପୂର୍ଣ୍ଣରୂପେ ତୁମର ହୋଇପାରନ୍ତି । କହ, ତୁମେ ମତେ ଗ୍ରହଣ କରିବ ?"

ଏହା ଶୁଣିବା ପରେ ରୋମିଓ ଆଉ ନିଜକୁ ସଂଯତ ରଖି ପାରିଲେ ନାହିଁ । ସେ ପ୍ରେମରେ ବିହ୍ୱଳ ହୋଇ କହିଲେ, "ପ୍ରିୟତମେ, ତୁମେ ମୋତେ ପ୍ରିୟତମ ବୋଲି ଡାକ, ଅଥବା ତୁମର ଯାହା ଇଚ୍ଛା ସେ ନାମରେ ଡାକ । ରୋମିଓ ନାମ ଯେତେବେଳେ ତୁମର ପ୍ରିୟ ନୁହେଁ, ସେତେବେଳେ ମୁଁ ଆଉ ରୋମିଓ ନୁହେଁ ।"

ଜୁଲଏଟ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ତାଙ୍କର ସ୍ୱଗତ ଉକ୍ତିକୁ କେହି ଶୁଣୁଛି; କିନ୍ତୁ ଉପବନ ମଧ୍ୟରୁ ଜଣେ ପୁରୁଷର କଣ୍ଠସ୍ୱର ଶୁଣି ସେ ଚମକି ପଡ଼ିଲେ । ସେ ଭାବିଲେ, 'ଏତେ ରାତିରେ ଏଠାରେ କିଏ ? ଘୋର ଅନ୍ଧକାରରେ ବଗିଚା ମଧ୍ୟରେ ଥିଲା କାହିଁକି ? ତେବେ ସେ ଲୋକଟି ମୋ ମନର କଥାସବୁ ଜାଣିଗଲା ତ ?' ଜୁଲଏଟ ଏହିପରି ଚିନ୍ତା କରୁଥିବା ସମୟରେ ରୋମିଓ ପୁଣି ଜୁଲଏଟଙ୍କ ପ୍ରତି ନିଜର ପ୍ରେମକଥା କହିଲେ। କଣ୍ଠସ୍ୱର ବାରି ସେ ବୁଝିପାରିଲେ ଯେ ଏହା ପ୍ରକୃତରେ ତାଙ୍କର ପ୍ରଣୟୀ ରୋମିଓଙ୍କର । ତହୁଁ ସେ କହିଲେ, "ପ୍ରିୟତମ, ତୁମେ କି ଘୋର

ବିପଦ ବରଣ କରି ନେଇଛ ? ଗଭୀର ନିଶୀଥରେ ପ୍ରାଚୀର ଅତିକ୍ରମ କରି ବଗିଚା ମଧ୍ୟରେ ପ୍ରବେଶ କରିଛ । ଆମ ଘରର କେହି ଯଦି ତୁମର ସନ୍ଧାନ ପାଆନ୍ତି, ତେବେ ତୁମର ମୃତ୍ୟୁ ନିଶ୍ଚିତ । ମଣ୍ଟେଗ ପରିବାରର କାହାରିକୁ ଏପରି ଅବସ୍ଥାରେ ପାଇ କି ସେମାନେ ତାହାର ପ୍ରାଣ ନ ନେଇ ଛାଡ଼ିଦେବେ ?"

ରୋମିଓ କହିଲେ, "ପ୍ରିୟତମେ, ମୁଁ ଶତ ତରବାରିର ଆଘାତକୁ ଭୟ କରେ ନାହିଁ ! କେବଳ ତୁମେ ମୋ ପ୍ରତି ସଦୟ ହେଲେ ମୁଁ କାହାରି ଶତ୍ରୁତାକୁ ଚିନ୍ତା କରିବି ନାହିଁ । ତୁମର ପ୍ରେମହୀନ। ଜୀବନ ଧରି ରହିବା ଅପେକ୍ଷା ମୋର ମରଣ ଶତଗୁଣେ ଶ୍ରେୟସ୍କର ।"

ଜୁଲିଏଟ ବ୍ୟାକୁଳ ହୋଇ ପଚାରିଲେ, "ତୁମେ କିପରି ଏଠାକୁ ଆସିଲ ? କିଏ ପଥ ଦେଖାଇଦେଲା ?"

ରୋମିଓ ଉତ୍ତର କଲେ, "ପ୍ରେମ ହିଁ ମୋତେ ଏ ପଥ ଦେଖାଇ ଦେଲା । ମୁଁ କେବେ ସମୁଦ୍ରଯାତ୍ରା କରିନାହିଁ । ତଥାପି ତୁମେ ଯଦି ସମୁଦ୍ରର ଅପରପାରରେ ଥାଆନ୍ତ, ତେବେ ତୁମକୁ ପାଇବା ପାଇଁ ମୁଁ ଅନାୟାସରେ ସମୁଦ୍ର ପାର ହୋଇ ପାରିଥାନ୍ତି ।"

ସାଧାରଣତଃ ଯୁବତୀମାନେ ପୁରୁଷ ନିକଟରେ ହଠାତ୍ ନିଜର ପ୍ରେମଭାବ ପ୍ରକାଶ ନ କରି ତାହାର ପ୍ରାର୍ଥନା ପ୍ରତ୍ୟାଖ୍ୟାନ କରିଥାନ୍ତି । ଏପ୍ରକାର ଛଳନାଦ୍ୱାରା ସେମାନେ ପୁରୁଷର ମନକୁ ଆହୁରି ଆକର୍ଷଣ କରିଥାନ୍ତି; କିନ୍ତୁ ଏ କ୍ଷେତ୍ରରେ ଜୁଲିଏଟ ସେପରି କରି ପାରିଲେ ନାହିଁ । ସେ ଯେ ରୋମିଓଙ୍କ ପ୍ରତି କେତେଦୂର ଆସକ୍ତ, ତାହା ପ୍ରକାଶ କରି ସାରିଥିଲେ । ତେଣୁ ସେ କହିଲେ, "ପ୍ରିୟତମ ରୋମିଓ, ମୁଁ ଯାହା ଅଜ୍ଞାତସାରରେ କହିସାରିଛି, ତାହା ମୋର ଅନ୍ତରର ବାଣୀ । ମୁଁ କାଲି ସମ୍ବାଦ ପଠାଇବି । ଆମର ବିବାହ ସମ୍ପୂର୍ଣ୍ଣ ସ୍ଥିର କରି ପ୍ରେମର ବନ୍ଧନକୁ ଚିରନ୍ତନ କରିବା । ତେଣିକି

ମୁଁ ମୋର ସର୍ବସ୍ୱ ଅର୍ପଣ କରି ଛାୟାପରି ତୁମର ଅନୁସରଣ କରିବି ।",

ରାତି ପ୍ରଭାତ ପ୍ରାୟ । ଜଣେ ଦାସୀ ଜୁଲିଏଟଙ୍କୁ ବାରମ୍ବାର ଡାକୁଥାଏ । ତେଣୁ ଘୋର ଅନିଚ୍ଛାସତ୍ତ୍ୱେ ଦୁହେଁ ପରସ୍ପରଠାରୁ ବିଦାୟ ନେଲେ ।

ରୋମିଓ ଏହି ଘଟଣାରେ ଆନନ୍ଦରେ ଏତେ ବିହ୍ୱଳ ହୋଇ ପଡ଼ିଲେ ଯେ ସେ ଗୃହକୁ ଯାଇ ବିଶ୍ରାମ ନେବା କଥା ଏକବାରେ ଭୁଲିଗଲେ । ସେ ସଙ୍ଗେ ସଙ୍ଗେ ଲରେନ୍‌ସ ନାମକ ଜଣେ ପାଦ୍ରୀଙ୍କ ଗୃହରେ ଉପସ୍ଥିତ ହେଲେ । ସେତେବେଳକୁ ଲରେନ୍‌ସ ଉପାସନାଦି ଶେଷ କରିସାରିଥିଲେ । ସେ ରୋମିଓଙ୍କ ମୁଖକୁ ଦେଖିଲା ମାତ୍ରେ ଜାଣିପାରିଲେ ଯେ ଗତ ରାତିରେ ତାଙ୍କର ଆଦୌ ନିଦ୍ରା ହୋଇ ନାହିଁ । ଏଥିପୂର୍ବରୁ ସେ ରୋମିଓଙ୍କର ରୋଜାଲିନଙ୍କ ପ୍ରତି ଆସକ୍ତି ଓ ରୋଜାଲିନଙ୍କର ତାଙ୍କ ପ୍ରତି ବିରକ୍ତି ବିଷୟ ଉତ୍ତମରୂପେ ଜାଣିଥିଲେ । ତେଣୁ ସେ ମନେ କଲେ ଯେ ଏହି ରୋଜାଲିନଙ୍କ ଚିନ୍ତାରେ ରୋମିଓ ଏପରି ବ୍ୟଥିତ । ତେଣୁ ସେ ଏହି ପ୍ରସଙ୍ଗ ଉତ୍ଥାପନ କଲାମାତ୍ରେ ରୋମିଓ ଜୁଲିଏଟଙ୍କ ବିଷୟ ପ୍ରକାଶ କରି ସମସ୍ତ ଘଟଣା ବର୍ଣ୍ଣନା କଲେ ଏବଂ ସେହି ଦିନ କିପରି ସେ ଦୁହିଁଙ୍କର ବିବାହ ହେବ, ତାହାର ବ୍ୟବସ୍ଥା କରିବାକୁ ଅନୁରୋଧ କଲେ । ପାଦ୍ରୀ ଲରେନ୍‌ସ ରୋମିଓଙ୍କର ଏହି ପରିବର୍ତ୍ତନରେ ବିସ୍ମିତ ହୋଇଗଲେ । ଏଥିପୂର୍ବରୁ ସେ ରୋମିଓଙ୍କୁ କେତେଥର କହିଥିଲେ, "ତୁମେ ରୋଜାଲିନ କଥା ଭୁଲିଯାଅ । ପ୍ରେମ ଚକ୍ଷୁରେ ନ ଥାଏ, ହୃଦୟରେ ଥାଏ । ସେ ଯେତେବେଳେ ତୁମର ଅନୁରାଗିଣୀ ନୁହେଁ, ତାକୁ ପାଇବାକୁ ଇଚ୍ଛା କରୁଛ କାହିଁକି ? ତାକୁ ଭୁଲିଯିବା ତୁମ ପକ୍ଷରେ ଉଚିତ ।" ରୋମିଓ କହୁଥିଲେ, "ମୁଁ ଜାଣେ, ରୋଜାଲିନ୍‌ର ମୋ ପ୍ରତି ଅନୁରାଗ

ନାହିଁ; ବରଂ ସେ ମୋତେ ଘୃଣା କରେ । ତାକୁ ପାଇବାକୁ ଇଚ୍ଛା କରିବା ମୋର ଉଚିତ ନୁହେଁ । କିନ୍ତୁ କେଜାଣି କାହିଁକି ମୋ ମନ ତାକୁ ହିଁ ଗୁହୁଁଛି । ତା ବିନା ମୋର ପ୍ରାଣ ରହିବ ନାହିଁ ।”

ଲରେନସ ବୁଝିପାରିଲେ ଯେ ରୋମିଓ ଏବଂ ଜୁଲିଏଟ ପରସ୍ପର ହୃଦୟ ବିନିମୟ କରିଅଛନ୍ତି । ତେଣୁ ଏ ଦୁହିଙ୍କର ବିବାହ-ଦ୍ୱାରା ଉଭୟଙ୍କର ଜୀବନ ସୁଖମୟ ହେବ । ବିଶେଷତଃ ଲରେନ୍ସ କାପିଉଲେଟ ଓ ମଣ୍ଟେଗ ଉଭୟ ପରିବାରର ହିତାକାଙ୍କ୍ଷୀ ବନ୍ଧୁ ଥିଲେ ଓ ଦୁଇଟି ପରିବାର ମଧ୍ୟରେ ବିରୋଧ ଦୂର କରିବା ପାଇଁ ବହୁବାର ଚେଷ୍ଟା କରି ବିଫଳ ହୋଇଥିଲେ । ଏହି ବିବାହଦ୍ୱାରା ସେହି ଶତ୍ରୁତା ଦୂର ହେବ ଓ ଭେରୋନାର ଦୁଇଟି ପ୍ରତିପତ୍ତିଶାଳୀ ପରିବାର ମଧ୍ୟରେ ବନ୍ଧୁତ୍ୱ ପ୍ରତିଷ୍ଠିତ ହେବ । ତେଣୁ ସେ ଏହି ବିବାହରେ ଯଥାଶକ୍ତି ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

ପୂର୍ବ ପ୍ରତିଶ୍ରୁତି ଅନୁସାରେ ଜୁଲିଏଟ ଜଣେ ବିଶ୍ୱସ୍ତ ଲୋକକୁ ରୋମିଓଙ୍କ ନିକଟକୁ ପଠାଇଲେ ଏବଂ ରୋମିଓ ବିବାହର ସମୟ ଓ ସ୍ଥାନ ଜୁଲିଏଟଙ୍କୁ ଜଣାଇଦେଲେ । ଯଥା ସମୟରେ ବୃଦ୍ଧ ପାଦ୍ରୀ ଲରେନ୍ସ ରୋମିଓ ଏବଂ ଜୁଲିଏଟଙ୍କୁ ପବିତ୍ର ବିବାହ-ବନ୍ଧନରେ ଆବଦ୍ଧ କରି ଈଶ୍ୱରଙ୍କୁ ପ୍ରାର୍ଥନା କଲେ, “ଦୁହିଙ୍କର ଦାମ୍ପତ୍ୟ ଜୀବନ ସୁଖମୟ ହେଉ । କାପିଉଲେଟ ଓ ମଣ୍ଟେଗ ପରିବାର ମଧ୍ୟରେ ଥିବା ଶତ୍ରୁତା ପରିବର୍ତ୍ତରେ ଚିରଶାନ୍ତି ବିଦ୍ୟମାନ ହେଉ ।”

ବିବାହ କର୍ମ ଶେଷ ହେବା ମାତ୍ରେ ଜୁଲିଏଟ ସ୍ୱଗୃହକୁ ଗ୍ଲଲିଗଲେ । ରୋମିଓ ତାଙ୍କୁ ଜଣାଇଲେ ଯେ ସେ ରାତିରେ ସେହି ଉପବନକୁ ଯିବେ ଓ ସେହିଠାରେ ଉଭୟଙ୍କର ସାକ୍ଷାତ ହେବ ।

ଜୁଲିଏଟ ଗୃହରେ ପହଞ୍ଚିଲେ; ମାତ୍ର କେତେବେଳେ ରାତ୍ରି ହେବ ଓ ନିଜର ପ୍ରିୟତମ ରୋମିଓଙ୍କ ସହିତ ତାଙ୍କର ମିଳନ ହେବ, ଏହି ଚିନ୍ତାରେ ସେ ଅସ୍ଥିର ହୋଇପଡ଼ିଲେ । ଗୃହର କୌଣସି କାର୍ଯ୍ୟରେ ତାଙ୍କର ମନ ଲାଗିଲା ନାହିଁ ।

ଦୈବାତ୍ ଠିକ୍ ସେହି ଦିନ ଦିବା ଦ୍ୱିପ୍ରହର ବେଳକୁ ରୋମିଓଙ୍କର ବନ୍ଧୁ ବେନ୍‌ଭୋଲିଓ ଏବଂ ମର୍‌କ୍ୟୁସିଓ ଭେରୋନା ସହରର ଗୋଟିଏ ପଥରେ ଯାଉ ଯାଉ କେତେକ କାପିଉଲେଟ୍‌ଙ୍କର ସମ୍ମୁଖୀନ ହେଲେ । ଟାଇବାଲଟ୍ ସେହି ଦିନ ରୋମିଓଙ୍କୁ ଆକ୍ରମଣ କରିବାକୁ ବାହାରିଥିଲେ । ସେ ମର୍‌କ୍ୟୁସିଓଙ୍କୁ ଦେଖିବା ମାତ୍ରେ ରୁକ୍ଷ ଭାଷାରେ କହିଲେ, "ତୁମେ ମଣ୍ଟେଗ ପରିବାରର ସେ ହୀନ ରୋମିଓ ସାଥିରେ ମିଳାମିଶା କରୁଛ କାହିଁକି ?" ମର୍‌କ୍ୟୁସିଓ ମଧ୍ୟ ଟାଇବାଲ୍‌ଟ ପରି ଯୁବକ । ଉଭୟଙ୍କର ରକ୍ତ ଉଷ୍ଣ । ସେ ସେହିପରି ରୁକ୍ଷ ଭାଷାରେ ଟାଇବାଲ୍‌ଟଙ୍କୁ ଉତ୍ତର ଦେଲେ । ଦୁହିଁଙ୍କର କ୍ରୋଧ ଦେଖି ବେନଭୋଲିଓ ଉଭୟଙ୍କୁ ଶାନ୍ତ କରିବାକୁ ଚେଷ୍ଟା କଲେ । ମାତ୍ର କେହି ଶାନ୍ତ ହେବାକୁ ପ୍ରସ୍ତୁତ ନ ଥିଲେ । ଦୁହିଁଙ୍କ ମଧ୍ୟରେ କଳହ ଲାଗିଆସିବା ବେଳକୁ ଦୈବାତ୍ ରୋମିଓ ସେଠାରେ ଉପସ୍ଥିତ ହେଲେ । ଟାଇବାଲ୍‌ଟ ତାଙ୍କୁ ଦେଖିଲାକ୍ଷଣି କ୍ରୋଧରେ କହିଉଠିଲେ, "ହୋଇଛି ଆଉ ଗୋଟାଏ ସଇତାନ ।"

ଟାଇବାଲ୍‌ଟ ଜୁଲିଏଟଙ୍କ କୁଟୁମ୍ବର ଜଣେ ହୋଇଥିବାରୁ ଓ ଜୁଲିଏଟ ତାଙ୍କୁ ଶ୍ରଦ୍ଧା କରୁଥିବାରୁ ରୋମିଓ ଏହି ଟାଇବାଲ୍‌ଟଙ୍କ ସଙ୍ଗେ କୌଣସି ପ୍ରକାର ବାଦବିବାଦ କରିବାକୁ ଇଚ୍ଛୁକ ନ ଥିଲେ । ଏହାଛଡ଼ା ରୋମିଓ ପାରିବାରିକ କଳହଠାରୁ ନିଜକୁ ସର୍ବଦା ଦୂରରେ ରଖିଥିଲେ । ସେ ସ୍ୱଭାବତଃ ଧୀରସ୍ଥିର, ଉଦାର ପ୍ରକୃତିର ଥିଲେ । ବିଶେଷତଃ କାପିଉଲେଟ୍ ପରିବାରର ଜୁଲିଏଟଙ୍କୁ ବିବାହ କରିବା

ପରେ ଏହି ପରିବାର ପ୍ରତି ଗୋଟାଏ ଶ୍ରଦ୍ଧା ପୋଷଣ କରିଥିଲେ । ତେଣୁ ସେ ଧୀରଭାବରେ ଟାଇବାଲଟଙ୍କୁ ପ୍ରଣାମ କରି 'ହେ କାପିଉଲେଟ୍ ମହାଶୟ' ବୋଲି ସମ୍ବୋଧନ କରି ତାଙ୍କୁ ଶାନ୍ତ କରିବାକୁ ଉଦ୍ୟମ କଲେ । କିନ୍ତୁ ଟାଇବାଲ୍‌ଟର ମଣ୍ଟେଗ ପରିବାର ପ୍ରତି ଘୃଣାର ସୀମା ନ ଥିଲା । ତେଣୁ ସେ ରୋମିଓଙ୍କର ଏହି ଆଚରଣରେ ଶାନ୍ତ ହେବା ପରିବର୍ତ୍ତେ କ୍ରୋଧରେ ତରବାରି ବାହାର କରି ଆକ୍ରମଣ କରିବାକୁ ଉଦ୍ୟତ ହେଲେ । ମରକ୍ୟୁଶିଓ ରୋମିଓଙ୍କର ଏପରି ବିନୀତ ଆଚରଣରେ ପ୍ରକୃତ କାରଣ ବୁଝି ନ ପାରି ମନେକଲେ ଯେ ରୋମିଓ ଟାଇବାଲ୍‌ଟ ନିକଟରେ ଏପରି ନମ୍ରତା ପ୍ରକାଶ କରିବାଦ୍ୱାରା ଅପମାନକୁ ବରଣ କରିନେଇଅଛନ୍ତି । ତେଣୁ ସେ ଟାଇବାଲ୍‌ଟଙ୍କ ଉଦ୍ଧତ ବାକ୍ୟର ଉପଯୁକ୍ତ ପ୍ରତ୍ୟୁତ୍ତର ଦେବାକୁ ବସିଲେ । ଏହା ଫଳରେ ଟାଇବାଲ୍‌ଟ ଏତେ ଉତ୍ତେଜିତ ହୋଇଉଠିଲେ ଯେ ସେ ମର୍କ୍ୟୁଶିଓଙ୍କୁ ତରବାରିରେ ଆକ୍ରମଣ କଲେ । ରୋମିଓ ଏବଂ ବେନଭୋଲିଓ ଦୁହିଁଙ୍କୁ ଏପ୍ରକାର ଯୁଦ୍ଧରୁ ବିରତ ହେବାପାଇଁ ଯଥାସାଧ୍ୟ ଚେଷ୍ଟା କଲେ; କିନ୍ତୁ ସେମାନଙ୍କର ଚେଷ୍ଟା ବୃଥା ହେଲା । ଟାଇବାଲଟ୍‌ଙ୍କ ଅସ୍ତ୍ରାଘାତରେ ମରକ୍ୟୁଶିଓଙ୍କ ମୃତ୍ୟୁରେ ରୋମିଓ ଆଉ ନିଜକୁ ସଂଯତ ରଖିପାରିଲେ ନାହିଁ । ସେ କ୍ରୁଦ୍ଧ ହୋଇ କହିଲେ, "ଆଚ୍ଛା, କିଏ ସଇତାନ ଦେଖାଯାଉ ।" ଏହା କହି ସେ ନିଜର ତରବାରି ବାହାର କରି ଟାଇବାଲ୍‌ଟଙ୍କୁ ଆକ୍ରମଣ କଲେ । ଦୁହିଙ୍କ ମଧ୍ୟରେ ଘୋର ଅସିଯୁଦ୍ଧ ଚାଲିଲା । ପରିଶେଷରେ ରୋମିଓଙ୍କ ଅସ୍ତ୍ରାଘାତରେ ଟାଇବାଲ୍‌ଟ ପ୍ରାଣ ହରାଇଲେ ।

ଦିବାଲୋକରେ, ସହରର ଏକ ପ୍ରଧାନ ରାସ୍ତା ଉପରେ ଏହି ଦୁର୍ଘଟନା ଘଟିବାରୁ ସମ୍ବାଦଟି ଅଳ୍ପ କାଳ ମଧ୍ୟରେ ସମଗ୍ର ସହରରେ

ବ୍ୟାପିଗଲା ଏବଂ ଅନେକ ଲୋକ ଘଟନା ସ୍ଥଳରେ ଏକତ୍ର ହୋଇଗଲେ । କାପିଉଲେଟ ଓ ମଣ୍ଟେଗ ପରିବାରଦ୍ୱୟର କର୍ତ୍ତା ଓ ସେମାନଙ୍କ ସ୍ତ୍ରୀ ମଧ୍ୟ ଉପସ୍ଥିତ ହେଲେ । ସ୍ୱୟଂ ରାଜା ମଧ୍ୟ ଅଳ୍ପ ସମୟ ମଧ୍ୟରେ ଉପସ୍ଥିତ ହେଲେ । ନିହତ ମରକ୍ୟୁସିଓଙ୍କ ସହିତ ତାଙ୍କର ସମ୍ପର୍କ ଥିଲା । ଏଥିପୂର୍ବରୁ ଏହି ଦୁଇ ପରିବାରର ବାଦ-ବିବାଦ ହେତୁ ବହୁବାର ଶାନ୍ତିଭଙ୍ଗ ଘଟିଥିଲା । ଏବେ ମରକ୍ୟୁସିଓ ଏବଂ ଟାଇବାଲ୍‌ଟଙ୍କର ମୃତ୍ୟୁରେ ସେ ବ୍ୟଥିତ ହୋଇ ନିୟମାନୁସାରେ ଅପରାଧୀର ଉପଯୁକ୍ତ ଦଣ୍ଡବିଧାନ କରିବାକୁ ସ୍ଥିରକଲେ । ବେନ୍‌-ଭୋଲିଓ ସମସ୍ତ ଘଟନା ସ୍ୱଚକ୍ଷୁରେ ଦେଖିଥିବାରୁ ତାଙ୍କୁ ସମସ୍ତ ବିଷୟ ମୂଳରୁ ବର୍ଣ୍ଣନା କରିବାକୁ କହିଲେ । ରୋମିଓଙ୍କ ଦୋଷକୁ ଯଥାସମ୍ଭବ ନ୍ୟୂନ କରି ସେ ସତ୍ୟ କଥା ପ୍ରକାଶ କରିଗଲେ । କାପିଉଲେଟଙ୍କ ଗୃହିଣୀ ନିଜର କୁଟୁମ୍ବୀ ଟାଇବାଲ୍‌ଟଙ୍କ ମୃତ୍ୟୁରେ ନିତାନ୍ତ ଶୋକାର୍ତ୍ତ ହୋଇପଡ଼ିଥିଲେ । ପ୍ରତିହିଂସା-ବହ୍ନି ତାଙ୍କ ହୃଦୟରେ ଜଳୁଥିଲା । ସେ ରାଜାଙ୍କୁ ବାରମ୍ବାର ଅନୁରୋଧ କଲେ, ଟାଇବାଲ୍‌ଟର ହତ୍ୟା ପାଇଁ ଯିଏ ଦାୟୀ ତାର ଉପଯୁକ୍ତ ଦଣ୍ଡବିଧାନ କରାଯାଉ । ବେନ୍‌ଭୋଲିଓର ସାକ୍ଷ୍ୟ ଉପରେ ବିଶ୍ୱାସ କରିବାର କାରଣ ନାହିଁ; କାରଣ ସେ ନିଜେ ଜଣେ ମଣ୍ଟେଗ, ପୁଣି ରୋମିଓର ବନ୍ଧୁ । ତା କଥା କଦାପି ବିଶ୍ୱାସଯୋଗ୍ୟ ହୋଇ ନ ପାରେ ।

ଏପର୍ଯ୍ୟନ୍ତ ସେ ଜାଣି ନ ଥିଲେ ଯେ ନିଜର କନ୍ୟା ଜୁଲିଏଟ ଏଥିମଧ୍ୟରେ ରୋମିଓଙ୍କୁ ବିବାହ କରିସାରିଛନ୍ତି । ତେଣୁ ଅଜ୍ଞାତସାରରେ ସେ ନିଜ ଜାମାତାଙ୍କର ପ୍ରାଣଦଣ୍ଡ ନିମନ୍ତେ ରାଜାଙ୍କ ନିକଟରେ ପ୍ରାର୍ଥନା କଲେ । ଏଣେ ମଣ୍ଟେଗ ପରିବାରର ଗୃହିଣୀ ନିଜ ପୁତ୍ର ରୋମିଓଙ୍କର ଜୀବନରକ୍ଷା ପାଇଁ ରାଜାଙ୍କୁ ପ୍ରାର୍ଥନା କରି କହିଲେ, "ମୋର ପୁତ୍ରର କୌଣସି ଦୋଷ ନାହିଁ

ଟାଇବାଲ୍‌ଟ ପ୍ରଥମେ ମର୍କ୍ୟୁଶିଓଙ୍କୁ ହତ୍ୟା କରିଛି । ତେଣୁ ନିଶ୍ଚୟ ପ୍ରାଣଦଣ୍ଡ ପାଇଥାନ୍ତା ।" ଏହିପରି ଉଭୟ ପକ୍ଷରୁ ଯୁକ୍ତି ହେଲା । ରାଜା ସବୁ ଧୀରଭାବରେ ଶୁଣି ଶେଷରେ ଆଦେଶ ଦେଲେ ଯେ ରୋମିଓଙ୍କୁ ଭେରୋନାରୁ ନିର୍ବାସିତ କରାଯିବ ।

ବିବାହର ଅଳ୍ପ କେତେ ଘଣ୍ଟା ପରେ ସ୍ୱାମୀଙ୍କର ଦେଶରୁ ଚିରନିର୍ବାସନ ଦଣ୍ଡ—ଏହି ସମ୍ବାଦ ପାଇଲାକ୍ଷଣି ଜୁଲିଏଟ୍‌ଙ୍କ ମସ୍ତକରେ ବଜ୍ରପାତ ପରି ହେଲା । ସେ ପ୍ରଥମେ ରୋମିଓଙ୍କ ଉପରେ କ୍ରୋଧ ଓ ଅଭିମାନ ପ୍ରକାଶ କରି କହିଲେ, "ତୁମେ ମୋର ହୃଦୟକୁ ହରଣ କରିବା ସଙ୍ଗେ ସଙ୍ଗେ ମୋର ଆତ୍ମୀୟ ଟାଇବାଲ୍‌ଟର ଜୀବନ ହରଣ କଲ । ତୁମର ରୂପ ଯେପରି ସୁନ୍ଦର, ତୁମର ଅନ୍ତଃକରଣ ସେହିପରି ଖରାପ । ତୁମର ବାହାର ଦେବଦୂତ ପରି, ଅନ୍ତର ରାକ୍ଷସପରି । ବାହାରୁ ତୁମେ ମେଷପରି ନିରୀହ ହେଲେହେଁ, ତୁମର ପ୍ରକୃତି ବ୍ୟାଘ୍ର ପରି ନୃଶଂସ; ତୁମେ ହେଉଛ ଫୁଲମାଳ ପରି ଦିଶୁଥିବା ସର୍ପ ।" ତାଙ୍କ ହୃଦୟରେ ପ୍ରେମ ଓ କ୍ରୋଧ ଉଭୟ ମଧ୍ୟରେ ଅନେକ ବେଳ ପର୍ଯ୍ୟନ୍ତ ସଂଘର୍ଷ ଚାଲିଲା । ପରିଶେଷରେ ପ୍ରେମର ହିଁ ବିଜୟ ହେଲା । ସେ ଭାବିଲେ—ରୋମିଓ ଟାଇବାଲ୍‌ଟଙ୍କୁ ହତ୍ୟା କରିଛନ୍ତି ସତ୍ୟ; କିନ୍ତୁ ତାହା ହୋଇ ନ ଥିଲେ ରୋମିଓ ନିଜେ ନିହତ ହୋଇଥାନ୍ତେ । ତାଙ୍କ ଜୀବନ ରକ୍ଷାକରି ଈଶ୍ୱର ମୋର ମଙ୍ଗଳ କରିଅଛନ୍ତି । ଏହା ଭାବି ସେ ନିଜକୁ ସାନ୍ତ୍ୱନା ଦେଲାବେଳକୁ ପୁଣି ମନେ ପଡ଼ିଗଲା ଯେ ରୋମିଓ ଚିରଦିନପାଇଁ ରାଜ୍ୟରୁ ନିର୍ବାସିତ । ଦୁଃଖରେ ତାଙ୍କ ଚକ୍ଷୁରୁ ଲୋତକଧାରା ବହିବାକୁ ଲାଗିଲା ।

ଟାଇବାଲ୍‌ଟଙ୍କୁ ହତ୍ୟା କରିବା ପରେ ରୋମିଓ ଘଟନା ସ୍ଥଳରୁ ପଳାଇଯାଇ ଲରେନ୍‌ସଙ୍କ ମଠରେ ଆଶ୍ରୟ ନେଇଥିଲେ । ସେହିଠାରେ ସେ ସମ୍ବାଦ ପାଇଲେ ଯେ ରାଜା ତାଙ୍କ ନିର୍ବାସନ

ଦଣ୍ଡରେ ଦଣ୍ଡିତ କରିଅଛନ୍ତି । ଏହି ଦଣ୍ଡାଜ୍ଞା ତାଙ୍କୁ ମୃତ୍ୟୁଦଣ୍ଡ ଅପେକ୍ଷା ଆହୁରି କଠୋର ବୋଧ ହେଲା । ସେ ଭାବିଲେ— ଯେଉଁଠାରେ ଜୁଲିଏଟ୍ ତାହାହିଁ ସ୍ୱର୍ଗ । ଯେଉଁଠାରେ ଜୁଲିଏଟ ନାହିଁ; ସେ ନର୍କ । ଜୁଲିଏଟଙ୍କୁ ଭେରୋନାରେ ଛାଡ଼ି ମୁଁ ଅନ୍ୟ କୌଣସିଠାରେ ଜୀବନ ଧରି ରହି ପାରିବି ନାହିଁ । ଯଦି ସେଠାରେ ମୋର ଜୀବନ ଚାଲି ନ ଯାଏ, ତେବେ ମୁଁ ନର୍କ ଯନ୍ତ୍ରଣା ଭୋଗ କରିବି । ନା, ମୁଁ ଏହିଠାରେ ମରିଯିବା ସବୁଠାରୁ ଭଲ । ଏହା କହି ସେ କାନ୍ଦି କାନ୍ଦି ଭୂମିରେ ଗଡ଼ିବାକୁ ଲାଗିଲେ ।

ପାଦ୍ରୀ ଲରେନ୍ସ ଦେଖିଲେ ଯେ ଯୁକ୍ତିଦ୍ୱାରା ବୁଝାଇ ରୋମିଓଙ୍କୁ ଶାନ୍ତ କରି ହେବ ନାହିଁ । ତଥାପି ସେ କହିଲେ, "ତୁମର ଏ ଦୁର୍ବଳତା ସୁନ୍ଦର ନୁହେଁ । ତୁମେ ଟାଇବାଲ୍ଟଙ୍କୁ ହତ୍ୟା କରିଛ । ଏବେ ନିଜକୁ ହତ୍ୟା କରିବାକୁ ବସିଛ । ଆତ୍ମହତ୍ୟା ମହାପାପ । ଏହା ଦ୍ୱାରା କେବଳ ତୁମର ପାପ ବୃଦ୍ଧି ପାଇବ । ପୁଣି ତୁମକୁ ହରାଇଲେ ଜୁଲିଏଟଙ୍କର ଅବସ୍ଥା କଅଣ ହେବ ? ସେ ମଧ୍ୟ ତୁମର ବିୟୋଗରେ ପ୍ରାଣତ୍ୟାଗ କରିବେ । ତୁମ ପକ୍ଷରେ ସାହସ ଅବଲମ୍ବନ କରିବା ଉଚିତ । ଭାବି ଦେଖ, ଆଇନ ଅନୁସାରେ ନରହତ୍ୟା ଅପରାଧରେ ତୁମର ପ୍ରାଣଦଣ୍ଡ ହୋଇଥାନ୍ତା; କିନ୍ତୁ ତା ପରିବର୍ତ୍ତରେ ନିର୍ବାସନ ଦଣ୍ଡ ହୋଇଅଛି । ତୁମପ୍ରତି ଭଗବାନଙ୍କର ଏହା ଏକ ଅନୁଗ୍ରହ । ପୁଣି ତୁମକୁ ଟାଇବାଲ୍ଟ ହତ୍ୟା କରିବାର ସମ୍ଭାବନା ଥିଲା । ସେଥିରୁ ତୁମେ ରକ୍ଷାପାଇଅଛ । ଏହା ମଧ୍ୟ ଈଶ୍ୱରଙ୍କର ଦୟା । କେବଳ ଏତିକି ନୁହେଁ; ଯେଉଁ ଜୁଲିଏଟ୍‌କୁ ତୁମେ କେବେ ହେଲେ ପାଇବାର ଆଶା ନ ଥିଲା ତାଙ୍କୁ ପତ୍ନୀରୂପେ ପାଇଅଛ । ଭଗବାନଙ୍କର ଏତେ ଆଶୀର୍ବାଦ ପାଇ ମଧ୍ୟ ତୁମେ ନିଜକୁ ହତଭାଗ୍ୟ ମନେ କରିବା ଉଚିତ ନୁହେଁ ।"

ଏସବୁ ଶୁଣିଲା ପରେ ରୋମିଓଙ୍କର ମନ ସାମାନ୍ୟ ପରିବର୍ତ୍ତିତ ହେବାର ଦେଖି ଲରେନ୍‌ସ କହିଲେ—"ଯାଅ, ଆଜ ରାତିରେ ଗୋପନରେ ଜୁଲିଏଟ ନିକଟରୁ ବିଦାୟ ନେଇ ଆସ ଏବଂ ରାତି ପ୍ରଭାତ ହେବା ପୂର୍ବରୁ ଭେରୋନା ତ୍ୟାଗ କରି ମଣ୍ଟୁଆକୁ ଚାଲିଯାଅ। ତୁମେ ସେହିଠାରେ କିଛି ଦିନ ପାଇଁ ରହିବ। ଏପର୍ଯ୍ୟନ୍ତ ତୁମର ଜୁଲିଏଟ ସହିତ ବିବାହ କଥା ଏଠାରେ କେହି ଜାଣନ୍ତି ନାହିଁ। ମୁଁ ଏଥିମଧ୍ୟରେ ସୁଯୋଗ ଦେଖି ଏହି ବିବାହ ବିଷୟ ପ୍ରକାଶ କରିବି ଓ ତାହା ଫଳରେ ତୁମର ଦୁଇ ପରିବାର ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠିତ ହୋଇପାରିବ। ମୋର ଦୃଢ଼ ବିଶ୍ୱାସ ଯେ ସେତେବେଳେ ରାଜାଙ୍କର ମତ ପରିବର୍ତ୍ତିତ ହେବ ଓ ସେ ତୁମକୁ ପୁଣି ଭେରୋନାକୁ ଫେରି ଆସିବାକୁ ଅନୁମତି ଦେବେ। ଆଜ ତୁମେ ଯେତିକି ଦୁଃଖରେ ଭେରୋନା ତ୍ୟାଗ କରୁଛ, ସେତେବେଳେ ତାହାର ଶତ ଗୁଣ ଆନନ୍ଦରେ ତୁମେ ଭେରୋନାକୁ ଫେରିଆସିବ।"

ପାଦ୍ରୀଙ୍କର ଏହି ପରାମର୍ଶରେ ରୋମିଓଙ୍କର ମନ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା। ସେ ଗୋପନରେ ପୂର୍ବ ଉଦ୍ୟାନକୁ ଯାଇ ଜୁଲିଏଟ୍‌ଙ୍କ ସହିତ ସାକ୍ଷାତ କଲେ। ଉଭୟେ ଗଭୀର ଆନନ୍ଦ ମଧ୍ୟରେ ରାତିଟି କଟାଇଦେଲେ। ପୂର୍ବ ଦିଗରେ ସିନ୍ଦୁରା ଫାଟି ଆସିଲା। ଘୋର ଦୁଃଖରେ ରୋମିଓ ଏବଂ ଜୁଲିଏଟ୍ ପରସ୍ପରଠାରୁ ବିଦାୟ ନେଲେ। ରୋମିଓ ପ୍ରତିଦିନ ଜୁଲିଏଟ୍‌ଙ୍କ ନିକଟକୁ ପତ୍ର ଦେବେ ବୋଲି ଶପଥ କରି ବିଦାୟ ନେଲେ।

ଏହିଠାରୁ ଦୁହିଙ୍କ ଜୀବନରେ ଘୋର ବିପଦ ଦେଖାଦେଲା। ରୋମିଓ ଭେରୋନା ତ୍ୟାଗ କରିବାର ଅଳ୍ପ କେତୋଟି ଦିନ ପରେ କାପିଉଲେଟ୍ କର୍ତ୍ତା ଜୁଲିଏଟ୍‌ର ବିବାହର ବ୍ୟବସ୍ଥା କଲେ। ନିଜର

ଜାମାତାରୂପେ ସେ କାଉଣ୍ଟ ପାରିସ୍ ନାମକ ଜଣେ ଯୁବକଙ୍କୁ ସ୍ଥିର କଲେ । ପାରିସ୍ ଉଚ୍ଚ କୁଳରେ ଜାତ; ରୂପରେ ଅଦ୍ୱିତୀୟ ଓ ନାନା ଗୁଣରେ ବିମଣ୍ଡିତ । ସବୁ ବିଷୟରେ ଜୁଲିଏଟ୍‌ଙ୍କର ପତି ପଦରେ ଉପଯୁକ୍ତ ।

ଜୁଲିଏଟ୍ ଏହି ବିବାହ ପ୍ରସ୍ତାବ ଶୁଣି କଅଣ କରିବେ ସ୍ଥିର କରି ପାରିଲେ ନାହିଁ । ସେ ରୋମିଓଙ୍କୁ ବିବାହ କରି ସାରିଛନ୍ତି, ତାହା ପ୍ରକାଶ କରିପାରିଲେ ନାହିଁ । କୌଣସି ପ୍ରକାରେ ଏହି ବିବାହକୁ ବନ୍ଦ କରାଇବା ପାଇଁ ସେ କହିଲେ ଯେ ଟାଇବାଲ୍ଟଙ୍କ ମୃତ୍ୟୁ ପରେ ପରେ ବିବାହ ଉତ୍ସବ କରିବା ଅସୁନ୍ଦର ହେବ । ଲୋକେ ନିନ୍ଦା କରିବେ । ବିବାହ ଆଉ କିଛି ଦିନ ଗଡ଼ାଇଦେବା ଭଲ ।

କାପିଉଲେଟ୍ କର୍ତ୍ତା ଭାବିଲେ ଯେ ଏହି ବିବାହରେ ଜୁଲିଏଟ୍‌ର ସମ୍ପୂର୍ଣ୍ଣ ଇଚ୍ଛା ଅଛି । ପାରିସ୍ ପରି ସୁନ୍ଦର, ଗୁଣବନ୍ତ, କୁଳୀନ ଯୁବକଙ୍କୁ ପତିରୂପେ ପାଇବାକୁ ଯେକୌଣସି ସୁନ୍ଦରୀ ଯୁବତୀ ଲାଳାୟିତ ହେବାର କଥା । କେବଳ ଲଜ୍ଜାବଶତଃ ସେ ମନର କଥା ପ୍ରକାଶ ନ କରି ବିବାହର ଦିନ ଗଡ଼ାଇଦେବାକୁ କହୁଛି ।

ଆସନ୍ତା ଗୁରୁବାର ଦିନ ବିବାହ ନିମନ୍ତେ ସ୍ଥିର କରାଗଲା ।

ଜୁଲିଏଟ୍ ଦେଖିଲେ ଯେ ସେ ମହା ବିପଦରେ ପଡ଼ିଛନ୍ତି । ଏଥିରୁ ରକ୍ଷା ପାଇବାର କୌଣସି ଉପାୟ ଚିନ୍ତା ନ କରି ସେ ଲରେନ୍ସଙ୍କର ପରାମର୍ଶ ମାଗିବାକୁ ଗଲେ । ବୃଦ୍ଧ ପାଦ୍ରୀ ସମସ୍ତ କଥା ଶୁଣି କହିଲେ—"ମୁଁ ଏହାର ଗୋଟିଏ ମାତ୍ର ପ୍ରତିକାର ଦେଖି ପାରୁଛି । ସ୍ୱାମୀ ବଞ୍ଚି ଥାଉ ଥାଉ ପାରିସ୍‌କୁ ବିବାହ କରିବା ପାଇଁ ଯଦି ତୁମର ଏକାନ୍ତ ଅନିଚ୍ଛା ଥାଏ, ତେବେ ତୁମେ ଜୀଅନ୍ତା କବର ମଧ୍ୟରେ ପ୍ରବେଶ କରିବାକୁ ପ୍ରସ୍ତୁତ ହୋଇପାରିବ କି ? ତୁମର ମନ ଯଦି ସେପରି ଦୃଢ଼ ଥାଏ, ତେବେ ତୁମେ ଘରକୁ ଫେରିଯାଇ

ବିବାହରେ ସ୍ୱୀକୃତ ଅଛୁ ବୋଲି ତୁମ ପିତାଙ୍କୁ କହି ସବୁ ଆମୋଦ-ପ୍ରମୋଦରେ ଯୋଗ ଦିଅ । ଗୁରୁବାର ଦିନ ତୁମର ବିବାହ ସ୍ଥିର ହୋଇଅଛି । ମୁଁ ତୁମକୁ ଗୋଟିଏ ଶିଶିରେ ଔଷଧ ଦେବି । ବୁଧବାର ରାତିରେ ତୁମେ ସେ ଔଷଧ ପିଇ ଶୋଇପଡ଼ିବ । ଏ ଔଷଧ ପିଇଲା ପରେ ତୁମର ଶ୍ୱାସ-ପ୍ରଶ୍ୱାସ ବନ୍ଦ ହୋଇଯିବ; ଦେହ ଶୀତଳ ହୋଇଯିବ । ସମସ୍ତେ ମନେ କରିବେ ଯେ ତୁମର ମୃତ୍ୟୁ ହୋଇଛି; କିନ୍ତୁ ପ୍ରକୃତରେ ଏହି ଔଷଧର ଗୁଣ ୪୨ ଘଣ୍ଟା ପର୍ଯ୍ୟନ୍ତ ରହିବ । ତାହା ପରେ ପୁଣି ତୁମେ ଉଠି ବସିବ । ଗୁରୁବାର ଦିନ ସକାଳେ ଘରର ଲୋକେ ତୁମକୁ ମୃତ ମନେ କରି କବରକୁ ନେଇ ଯିବେ । ତୁମ ପରିବାରର ମୃତବ୍ୟକ୍ତିମାନଙ୍କୁ ଯେଉଁ ଅନ୍ଧକାରମୟ ଭୂଗର୍ଭସ୍ଥ ଗୃହରେ ରଖାଯାଏ, ତୁମକୁ ସେହିଠାରେ ରଖିଦେବେ । ଏଥିମଧ୍ୟରେ ମୁଁ ରୋମିଓଙ୍କୁ ସମ୍ବାଦ ଦେବି । ତୁମେ ସେହି ଗୃହ ମଧ୍ୟରେ ପୁନର୍ଜୀବନ ଲାଭ କଲାବେଳକୁ ରୋମିଓ ଆସି ତୁମକୁ ସେଠାରୁ ନେଇ ପୁଣି ମଣ୍ଟୁଆ ଚାଲିଯିବେ । ଅବଶ୍ୟ ଏହି କାର୍ଯ୍ୟ ପାଇଁ ତୁମର ଯଥେଷ୍ଟ ଧୈର୍ଯ୍ୟ ଓ ସାହସ ଦରକାର ।”

ଜୁଲିଏଟ୍ ପାରିସ୍‌ଙ୍କୁ ବିବାହ କରିବା ଅପେକ୍ଷା ଏହି ଉପାୟରେ ରୋମିଓଙ୍କ ପାଖକୁ ଯିବା ଶ୍ରେୟସ୍କର ମନେକଲେ । ସେ ଔଷଧ ଶିଶିଟି ନେଇ ଗୃହରେ ପହଞ୍ଚିବା ମାତ୍ରେ ପିତାଙ୍କୁ ବିବାହ ବିଷୟରେ ସ୍ୱୀକୃତି ଦେଲେ । ପାରିସ୍‌ଙ୍କୁ ଦେଖିବାରୁ ତାଙ୍କୁ ମଧ୍ୟ କହିଲେ ଯେ ଏହି ବିବାହରେ ସେ ସୁଖୀ ହେବେ ।

ବିବାହ ଆୟୋଜନର ଧୂମ୍‌ଧାମ୍ ଲାଗିଲା । କାପିଉଲେଟ୍-କର୍ତ୍ତାଙ୍କ ମନ ଆନନ୍ଦ ଉତ୍ସାହରେ ପୂରିଗଲା । ନାନା ଆନନ୍ଦ ଉତ୍ସବର ଆୟୋଜନ ହେଲା । ଉତ୍ସବଟି ଯେପରି ଖୁବ୍ ଆଡ଼ମ୍ବରରେ ହେବ

ସେଥିଲାଗି ବୃଦ୍ଧ କାପିଉଲେଟ୍ ଦକ୍ଷ ମୁକ୍ତହସ୍ତରେ ବ୍ୟୟ କରିବାକୁ ଲାଗିଲେ ।

ବୁଧବାର ରାତିରେ ଜୁଲିଏଟ୍ ହାତରେ ଔଷଧ ଶିଶିଟି ଧରି ଅନେକ ଚିନ୍ତା କଲେ । ଲରେନ୍ସଙ୍କ କଥା ସତ୍ୟ କି ? ଏ ଔଷଧ ଯେ ବିଷ ନୁହେଁ, ତାହାର ପ୍ରମାଣ କଅଣ ? ରୋମିଓ ସହିତ ତାଙ୍କର ବିବାହ କରାଇଥିବାରୁ କାଳେ ତାଙ୍କ ଉପରେ କେହି ଦୋଷ ଦେବ, ସେଥି-ପାଇଁ ଲରେନ୍ସ ତାଙ୍କୁ ବିଷ ଦେଉନାହାନ୍ତି ତ ? ରୋମିଓ ଉପସ୍ଥିତ ହେବା ପୂର୍ବରୁ ଯଦି ସେ ଜାଗିଉଠନ୍ତି ତେବେ କଅଣ ହେବ ? ସେ ଘର ଭିତର ଅନ୍ଧକାର ହୋଇଥିବ । ଶବ ଦେହରୁ ଦୁର୍ଗନ୍ଧ ବାହାରୁ-ଥିବ । କେବଳ ଅସ୍ଥି ଚର୍ମ ପୂରିଥିବ । ବିଶେଷତଃ ଟାଇବାଲ୍ଟଙ୍କ ଶବ ପଡିଥାଇଥିବ । ଶୁଣାଯାଏ, ସେଠାରେ ଭୂତମାନେ ଥାନ୍ତି । ଏସବୁ ଦେଖି ଜୀବନ ଧରି ରହିପାରିବି କି ? ଏହିପରି ନାନା ଦୁଶ୍ଚିନ୍ତା ତାଙ୍କ ମନରେ ଖେଳିଗଲା ।

ପୁଣି ସେ ଭାବିଲେ—ଯଦି ମୁଁ ଏ ଔଷଧ ନ ପିଏ, ତେବେ ପାରିସ୍ଙ୍କ ସଙ୍ଗେ ବିବାହ କରିବାକୁ ପଡିବ । ମୋର ପତି ଜୀବିତ । ଜାଣିଶୁଣି ମୁଁ କିପରି ଅନ୍ୟ ଜଣକୁ ମୋର ପତି ବୋଲି ସ୍ୱୀକାର କରିବି । ପରେ ଲୋକେ ମୋର ରୋମିଓଙ୍କ ସଙ୍ଗେ ବିବାହ ହୋଇ-ଥିବା କଥା ଜାଣିଲେ ମୋତେ କଅଣ କହିବେ ? ରୋମିଓ ମୋର ଏହି ଦ୍ୱିତୀୟ ବିବାହ କଥା ଶୁଣିଲେ କଅଣ କହିବେ ? ଜଗତରେ ମୁଁ ଉପହାସର ପାତ୍ର ହେବି । ପ୍ରେମର ମୂଲ୍ୟ କଅଣ ଏହା ? ଏପରି ବିବାହ କରିବା ଅପେକ୍ଷା ମରଣ ବରଂ ଶ୍ରେୟସ୍କର । ପରିଶେଷରେ ସେ ସେହି ଔଷଧକୁ ପିଇ ଯେକୌଣସି ପରିଣାମ ପାଇଁ ପ୍ରସ୍ତୁତ ହେବାକୁ ସ୍ଥିର କଲେ ।

"ଧନ୍ୟ ସେ ପ୍ରୀତିକି ମରଣ ଖୁନ୍ତିକି
ପ୍ରୀତି ସେ ପାରଇ ଜଣି
ଶିଖିଷ ମୃଦୁଳା ଲବଣୀ ପିଚ୍ଛୁଳା
ପ୍ରୀତି କଲା ସାହସିନୀ ।"

ଜୁଲିଏଟ୍ ଔଷଧଟିକି ପିଇଦେଇ ନିଜ ବିଛଣାରେ ଶୋଇ ପଡ଼ିଲେ । ଅଳ୍ପ ସମୟ ମଧ୍ୟରେ ତାଙ୍କର ଚେତନା ଲୋପ ପାଇଲା ।

ସକାଳ ହେବାରୁ ପାରିସ୍ ବେଶଭୂଷା ପିନ୍ଧି ଆଡ଼ମ୍ବର-ସହକାରେ କାପିଉଲେଟ୍‌କର୍ତ୍ତାଙ୍କ ଗୃହକୁ ଗଲେ । କିନ୍ତୁ ସେଠାରେ ଦେଖିଲେ ଯେ ପରିବାରର ସମସ୍ତେ ଗଭୀର ଶୋକରେ ଆଚ୍ଛନ୍ନ । ଯେଉଁ ଜୁଲିଏଟ୍‌ଙ୍କର ବିବାହ ପାଇଁ ଏଡ଼େ ଆନନ୍ଦ ଉତ୍ସବର ଆୟୋଜନ ହୋଇଥିଲା, ସେ ମୃତ । ଏହା ଜାଣିଲାମାତ୍ରେ ପାରିସଙ୍କର ସମସ୍ତ ଆଶା ଧୂଳିସାତ୍ ହୋଇଗଲା । ସେ ମଧ୍ୟ ଅନ୍ୟମାନଙ୍କ ଭଳି ଶୋକରେ ବିହ୍ୱଳ ହୋଇ ପଡ଼ିଲେ । ବୃଦ୍ଧ କାପିଉଲେଟ୍‌କର୍ତ୍ତା ଓ ତାଙ୍କ ଗୃହିଣୀ ଏକମାତ୍ର କନ୍ୟାର ମୃତ୍ୟୁରେ କ୍ରନ୍ଦନ କରି ଆକାଶ ବିଦୀର୍ଣ୍ଣ କରିପକାଇଲେ । କେଉଁ ପିତାମାତା କନ୍ୟାର ବିବାହ ଦିନ ତାହାର ମୃତ୍ୟୁରେ ଧୈର୍ଯ୍ୟ ଧରିପାରିବେ ?

ଯେଉଁଠାରେ ଆନନ୍ଦ ଉତ୍ସବର କୋଳାହଳ ଲାଗିଥିଲା, ସେଠାରେ କ୍ରନ୍ଦନର ରୋଳ ଶୁଣାଗଲା । ବିବାହ ନିମନ୍ତେ ଯେଉଁ ଆୟୋଜନ ହୋଇଥିଲା, ତାହା ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟାରେ ଲାଗିଲା । ବିବାହ ନିମନ୍ତେ ଆସିଥିବା ପୁଷ୍ପମାଳ୍ୟ ତାଙ୍କ ଶବାଧାରକୁ ମଣ୍ଡିତ କଲା । ଯେଉଁ ବାଦ୍ୟ ବରକନ୍ୟାଙ୍କର ଶୁଭ ମିଳନ ଘୋଷଣା କରିଥାନ୍ତା, ତାହା ଜୁଲିଏଟ୍‌ଙ୍କ ମହାପ୍ରୟାଣର ଶୋକଗୀତ ଗାନ କଲା । ପାଦ୍ରୀ ଜୁଲିଏଟ ଓ ପାରିସ୍‌ଙ୍କୁ ପବିତ୍ର ଦାମ୍ପତ୍ୟ ବନ୍ଧନରେ ଆବଦ୍ଧ କରି ମନ୍ତ୍ରପାଠ କରିବାକୁ ଆସିଥିଲେ । ଜୁଲିଏଟ୍‌ଙ୍କ ଆତ୍ମାର

ଶାନ୍ତି ପାଇଁ ତାଙ୍କୁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବାକୁ ହେଲା ।

ଯଥାବିଧି ଜୁଲିଏଟ୍‌ଙ୍କର ମୃତ ଦେହ କାପିଉଲେଟ୍ ପରିବାରର ସମାଧି ଗୃହକୁ ନିଆଯାଇ ସ୍ଥାପନ କରାଗଲା ।

ଅଶୁଭ ସମ୍ବାଦ ଅତି ଶୀଘ୍ର ଚାରିଆଡ଼େ ବ୍ୟାପିଯାଇଥାଏ । ଅଳ୍ପ ସମୟ ମଧ୍ୟରେ ଜୁଲିଏଟ୍‌ଙ୍କର ମୃତ୍ୟୁ ସମ୍ବାଦ ମଣ୍ଟୁଆରେ ରୋମିଓ ଶୁଣିପାରିଲେ । ଏଥିମଧ୍ୟରେ ପାଦ୍ରୀ ଲରେନ୍‌ସ ଜଣେ ଲୋକଦ୍ୱାରା ରୋମିଓଙ୍କ ନିକଟକୁ ସମସ୍ତ ପ୍ରକୃତ ଘଟନା ଜଣାଇ ଶୀଘ୍ର ସମାଧିମନ୍ଦିରରୁ ଜୁଲିଏଟ୍‌ଙ୍କୁ ଉଦ୍ଧାର କରିନେବାପାଇଁ ସମ୍ବାଦ ପଠାଇଥିଲେ ।

ପୂର୍ବଦିନ ରାତିରେ ରୋମିଓ ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖି-ଥିଲେ । ସ୍ୱପ୍ନରେ ସେ ଦେଖିଲେ ଯେ ତାଙ୍କର ମୃତ୍ୟୁ ହେଲା । ଜୁଲିଏଟ୍ ତାଙ୍କର ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରି ତାଙ୍କୁ ଚୁମ୍ବନ ଦେବାକୁ ଲାଗିଲେ । ଏହି ଚୁମ୍ବନଦ୍ୱାରା ତାଙ୍କ ଶରୀରରେ ପୁଣି ଜୀବନ ପ୍ରବେଶ କଲା । ସ୍ୱପ୍ନଟି ଅବଶ୍ୟ ଅତି ଅଦ୍ଭୁତ । ଯେ ମରିଗଲା, ସେ ପୁଣି ମରିବା କଥା ଜାଣିଲା କିପରି ? ଯାହାହେଉ, ସ୍ୱପ୍ନଟି ଦେଖିବା ପରେ ରୋମିଓଙ୍କ ମନରେ ବିଶେଷ ଆନନ୍ଦ ହେଲା । ସେ ଭାବିଲେ ଯେ ଏହି ସ୍ୱପ୍ନ ଜୁଲିଏଟ୍‌ଙ୍କର କୌଣସି ସମ୍ବାଦ ଆସିବାର ସୂଚନା ମାତ୍ର ।

କିନ୍ତୁ ସୁସମ୍ବାଦ ପରିବର୍ତ୍ତେ ସେ ଶୁଣିବାକୁ ପାଇଲେ ଯେ ଜୁଲିଏଟ୍‌ଙ୍କର ମୃତ୍ୟୁ ହୋଇଛି । ସମାଧିଗୃହରେ ଅନ୍ତତଃ ଜୁଲିଏଟ୍‌ଙ୍କ ମୃତ ଦେହ ଦେଖିବା ଆଶାରେ ସେ ଭେରୋନାକୁ ଯିବାପାଇଁ ଗୋଟିଏ ଘୋଡ଼ାର ବନ୍ଦୋବସ୍ତ କଲେ । ମନେ ମନେ ସ୍ଥିର-କଲେ ଯେ ସେ ସେହି ରାତିରେ ସମାଧିଗୃହ ନିକଟରେ ଉପସ୍ଥିତ ହେବେ ।

ରୋମିଓ ଦେଖିଲେ ଯେ ତାଙ୍କ ଜୀବନର ସକଳ ଆଶା ଭରସା ଲୋପ ପାଇଯାଇଅଛି । ସେ ରାଜ୍ୟରୁ ନିର୍ବାସିତ ହୋଇଅଛନ୍ତି । ଯେଉଁ ଜୁଲିଏଟ୍‌ଙ୍କ ଆଶାରେ ସେ ଜୀବନ ଧରି ବିଦେଶରେ ପଡ଼ି ରହିଥିଲେ, ସେ ଆଉ ଜୀବନରେ ନାହାନ୍ତି । ତେବେ ଆଉ ଜୀବନରେ କି ଫଳ । ଥରେ ଜୁଲିଏଟ୍‌ଙ୍କ ମୃତଦେହକୁ ଦେଖି ସେ ଆତ୍ମହତ୍ୟା କରିବେ ବୋଲି ସ୍ଥିର କଲେ ।

ମଣ୍ଟୁଆରେ ଗୋଟିଏ ଦରିଦ୍ର ଔଷଧ ବିକ୍ରେତା ଥିଲା । ବିଷ ବିକ୍ରୟ କରିବା ଆଇନ ଅନୁସାରେ ନିଷିଦ୍ଧ ହୋଇଥିଲେ ହେଁ ରୋମିଓ ସେହି ଔଷଧବିକ୍ରେତାକୁ ଅତିରିକ୍ତ ଅର୍ଥ ଦେଇ କିଛି ପ୍ରାଣନାଶକ ବିଷ ନେଲେ ।

ଏହି ବିଷ ନେଇ ସେ ଘୋଡ଼ାରେ ବସି ଭେରୋନାକୁ ଗଲେ । ସେ ଭାବିଥିଲେ ଯେ ସମାଧି ଗୃହରେ ଶେଷଥର ପାଇଁ ଜୁଲିଏଟର ମୁଖ ଚୁମ୍ବି ସେ ଏହି ବିଷ ଖାଇ ପ୍ରାଣତ୍ୟାଗ କରିବେ ଓ ଜୀବନରେ ନ ହେଲେ ମଧ୍ୟ ମରଣରେ ନିଜ ପ୍ରିୟା ସଙ୍ଗରେ ରହିବେ ।

ପ୍ରାୟ ଅର୍ଦ୍ଧରାତ୍ର ସମୟରେ ସେ ଭେରୋନାରେ ପହଞ୍ଚି କାପିଉଲେଟ୍ ପରିବାରର ସମାଧି ମନ୍ଦିର ନିକଟକୁ ଗଲେ । ସେ ସଙ୍ଗରେ ଗୋଟିଏ ଲଣ୍ଠନ, ଗୋଟିଏ ଶାବଳ ଓ ଗୋଟିଏ ହାତୁଡ଼ି ନେଇଥିଲେ । ଏହାର ସାହାଯ୍ୟରେ ସେ ସମାଧିଗୃହର ଦ୍ୱାର ଭାଙ୍ଗିବାକୁ ଚେଷ୍ଟା କରୁଛନ୍ତି, ଏହି ସମୟରେ କିଏ ଚିତ୍କାର କରି କହିଲା, "ଆରେ ଦୁଷ୍ଟ ମଣ୍ଟେଗ ସନ୍ତାନ ! ପ୍ରାଣକୁ ଆଶା ଥିଲେ ଏ କୁକାର୍ଯ୍ୟ କରନା ।"

ପାରିସ୍ ଜୁଲିଏଟ୍‌ଙ୍କୁ ହରାଇ ଗଭୀର ଦୁଃଖରେ ସେହି ରାତିରେ ସମାଧିମନ୍ଦିରକୁ ଆସିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଜୁଲିଏଟ୍‌ର ସମାଧି ଉପରେ ପୁଷ୍ପମାଳ୍ୟ ଅର୍ପଣ କରିବା । ରୋମିଓଙ୍କର ଜୁଲିଏଟ୍

ସମ୍ଭବତଃ କିଛି ସମ୍ବନ୍ଧ ଥିଲା ବୋଲି ସେ ଜାଣି ନଥିଲେ । ସେ ଏତିକି ଜାଣିଥିଲେ ଯେ ରୋମିଓ ଜଣେ ମଣ୍ଟେଗ ଓ ତେଣୁ କାପିଉଲେଟ୍ ପରିବାରର ଶତ୍ରୁ । ତେଣୁ ସେ ହଠାତ୍ ଧାରଣା କରିନେଲେ ଯେ ରୋମିଓଙ୍କର ଉଦ୍ଦେଶ୍ୟ ଖରାପ । ହୁଏତ କାପିଉଲେଟ୍ ସମାଧି ମନ୍ଦିରରେ ପ୍ରବେଶ କରି ମୃତ ଦେହ ଉପରେ କୌଣସି ଅତ୍ୟାଚାର କରିବା ପାଇଁ ରୋମିଓ ଗଭୀର ରାତିରେ ସେଠାରେ ଉପସ୍ଥିତ । ନିୟମ ଅନୁସାରେ ନିର୍ବାସିତ ରୋମିଓ ଭେରୋନାରେ ଦେଖାଗଲେ ପ୍ରାଣଦଣ୍ଡରେ ଦଣ୍ଡିତ ହେବାର କଥା । ପାରିସ୍ ତାଙ୍କୁ ଧରିବାକୁ ଉଦ୍ୟତ ହେବାରୁ ସେ କହିଲେ, "ଦେଖ ପାରିସ୍, ପ୍ରାଣ ପ୍ରତି ମମତା ଥିଲେ ମୋତେ ଧରିବାକୁ ଚେଷ୍ଟା କରନାହିଁ । ଟାଇବାଲ୍ଟର ଦଶା କଅଣ ହେଲା ମନେ ପକାଅ । ମୋତେ ଅଧିକ ଉତ୍ତ୍ୟକ୍ତ କଲେ କ୍ଷତି ଛଡ଼ା ଲାଭ ନାହିଁ । ତୁମକୁ ହତ୍ୟା କରିବା ପାଇଁ ମୋତେ ବାଧ କରୁଛ କାହିଁକି ?"

କିନ୍ତୁ ପାରିସ୍ ତାଙ୍କ ଉଦ୍ୟମରୁ ବିରତ ହେଲେ ନାହିଁ । ଫଳରେ ଦୁହିଙ୍କ ମଧ୍ୟରେ ଅସିଯୁଦ୍ଧ ଚାଲିଲା ଓ ସେଥିରେ ପାରିସ୍‌ଙ୍କର ମୃତ୍ୟୁ ହେଲା ।

ଏତେବେଳଯାଏ ରୋମିଓ ଏହି ଲୋକଟିର ପରିଚୟ ପାଇ ନଥିଲେ । ସେ ଲଣ୍ଠନ ଆଣି ମୃତ ବ୍ୟକ୍ତିକୁ ଦେଖି ଜାଣିପାରିଲେ ଯେ ସେ ପାରିସ୍ । ପାରିସ୍ ମୃତ ଜୁଲିଏଟ୍‌ଙ୍କ ସମାଧିରେ ପୁଷ୍ପମାଲ୍ୟ ଦେବାକୁ ଆସିଥିଲେ ବୋଲି ସେ ଅନୁମାନ କରିପାରିଲେ । ତେଣୁ ପାରିସ୍‌ର ମୃତଦେହକୁ ଉପଯୁକ୍ତ ସମ୍ମାନ ସହ ସମାଧି ମନ୍ଦିରରେ ରଖିବା ତାଙ୍କର କର୍ତ୍ତବ୍ୟ ବୋଲି ସେ ମନେକଲେ । ତେଣୁ ସେ ସମାଧି ମନ୍ଦିରର ଦ୍ୱାର ଭାଙ୍ଗି ଭିତରକୁ ପ୍ରବେଶ କଲେ ।

ସେ ଜୁଲିଏଟ୍‌ଙ୍କ ମୁଖକୁ ଚାହିଁ ଦେଖିଲେ ଯେ ତାଙ୍କ ଚେହେରାରେ କୌଣସି ପରିବର୍ତ୍ତନ ହୋଇନାହିଁ । ମୃତ୍ୟୁର ସ୍ପର୍ଶ ତାଙ୍କୁ ସ୍ପର୍ଶ କରିଥିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ତାଙ୍କୁ ବୋଧହେଲା ଯେ ସୁନ୍ଦରୀ ଜୁଲିଏଟ୍ ଗଭୀର ନିଦ୍ରାରେ ଶୋଇପଡ଼ିଛନ୍ତି । ତାଙ୍କ ପାଖରେ ଟାଇବାଲ୍‌ଟଙ୍କର ରକ୍ତାକ୍ତ ମୃତ ଦେହ । ସେଥିରୁ ଦୁର୍ଗନ୍ଧ ବାହାରୁଥିଲା । ରୋମିଓ ସ୍ମରଣ କଲେ ଯେ ଏହି ଟାଇବାଲ୍‌ଟ ମଧ୍ୟ ତାଙ୍କର ପ୍ରାଣପ୍ରିୟା ଜୁଲିଏଟ୍‌ର ପରିବାରର ଲୋକ । ତେଣୁ ସେହି ଶବ ନିକଟକୁ ଯାଇ ନିଜର କୃତକର୍ମ ପାଇଁ କ୍ଷମା ପ୍ରାର୍ଥନା କଲେ ।

ତତ୍ପରେ ରୋମିଓ ଜୁଲିଏଟ୍‌ଙ୍କୁ ଚୁମ୍ବନ କରି ଶେଷ ବିଦାୟ ନେଲେ ଓ ସେହି ତୀବ୍ର ବିଷକୁ ପାନକଲେ । ଅତି ଅଳ୍ପ ସମୟଭିତରେ ସେ ପ୍ରାଣ ହରାଇ ଜୁଲିଏଟଙ୍କ ନିକଟରେ ଢଳିପଡ଼ିଲେ ।

ଜୁଲିଏଟ୍‌ଙ୍କୁ ଲରେନ୍‌ସ ଯେଉଁ ଔଷଧ ପାନ କରିବାକୁ ଦେଇଥିଲେ ତାହାର କ୍ରିୟା ଶେଷ ହୋଇ ଆସିଲା । ସେ ଘୋର ନିଦ୍ରାରୁ ଉଠିପଡ଼ି ଦେଖିଲେ ଯେ ତାଙ୍କ ପାଖରେ ରୋମିଓ ଶାୟିତ । ସେ ପ୍ରଥମେ ଘଟଣା ବୁଝି ନପାରି ମନେକଲେ ଯେ ରୋମିଓ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଆସି ତାଙ୍କ ପାଖରେ ଶୋଇପଡ଼ିଛନ୍ତି ।

ଏଥିମଧ୍ୟରେ ଲରେନ୍‌ସ ଯେଉଁ ଲୋକଦ୍ୱାରା ରୋମିଓଙ୍କ ନିକଟକୁ ସମସ୍ତ ବିଷୟ ଜଣାଇ ସମ୍ବାଦ ପଠାଇଥିଲେ, ସେ ଦୁର୍ଦ୍ଦୈବବଶତଃ ମଣ୍ଟୁଆ ପର୍ଯ୍ୟନ୍ତ ଯାଇ ପାରି ନଥିଲା । ଲରେନ୍‌ସ ଏହା ଜାଣିପାରି ବୁଝିଲେ ଯେ ଜୁଲିଏଟ ସଂଜ୍ଞା ଲଭ କଲାବେଳକୁ ରୋମିଓ ଆସି ପାରିବେ ନାହିଁ । ତେଣୁ ତାଙ୍କୁ ସମାଧି ମନ୍ଦିରରୁ ନେଇଯିବା ପାଇଁ ସେ ନିଜେ ଗୋଟିଏ ଲଣ୍ଠନ ଓ ଶାବଳ ଧରି ସେଠାରେ ଉପସ୍ଥିତ ହେଲେ । କିନ୍ତୁ ସେଠାରେ ଗୋଟିଏ ଆଲୋକ ଜଳୁଥିବା ଏବଂ ପାଖରେ ତରବାରି ଓ ରକ୍ତ ପଡ଼ିଥିବାର ଦେଖି

ସେ ନିତାନ୍ତ ବିସ୍ମିତ ହୋଇଗଲେ । ଟିକିଏ ଅଗ୍ରସର ହୋଇ ସେ ରୋମିଓ ଏବଂ ପାରିସ୍‌ଙ୍କର ମୃତଦେହ ଦେଖିପାରିଲେ ।

ସେ ଏପରି ଭୀଷଣ ଦୁର୍ଘଟଣାର କୌଣସି କାରଣ ଭାବି ସ୍ଥିର କରିପାରିଲେ ନାହିଁ । ଏହି ସମୟରେ ଜୁଲିଏଟ ସଂଜ୍ଞା ଲାଭ କରି ପାଦ୍ରୀ ଲରେନ୍‌ସଙ୍କୁ ଦେଖିଲେ । ଏବେ ସେ ବୁଝିପାରିଲେ ଯେ ବର୍ତ୍ତମାନ ସେ ସମାଧି ମନ୍ଦିର ମଧ୍ୟରେ । ଲରେନ୍‌ସ କହିଲେ, "ଜୁଲିଏଟ, ସମାଧି ମନ୍ଦିର ମଧ୍ୟରୁ ବାହାରକୁ ଚାଲିଆସ । ମୋର ସମସ୍ତ ଚେଷ୍ଟା ବିଫଳ ହୋଇଅଛି । ଭଗବାନଙ୍କର ଇଚ୍ଛା ପୂରଣ ହୋଇଅଛି । ଆସ, ଶୀଘ୍ର ଚାଲି ଆସ ।"

ଏହି ସମୟରେ ଦୂରରେ ଲୋକ କୋଳାହଳ ଶୁଣାଯିବାରୁ ଲରେନ୍‌ସ ସେ ସ୍ଥାନ ତ୍ୟାଗ କରି ପଳାୟନ କଲେ । ଜୁଲିଏଟ ଦେଖିଲେ ଯେ ରୋମିଓଙ୍କ ହାତରେ ଗୋଟିଏ ପାତ୍ର । ସେ ମୁହୂର୍ତ୍ତକ ମଧ୍ୟରେ ବୁଝିପାରିଲେ ଯେ ରୋମିଓ ବିଷପାନ କରି ପ୍ରାଣ ହରାଇ ଅଛନ୍ତି । ଏପରି ଅବସ୍ଥାରେ ନିଜ ପ୍ରାଣର ଆଉ ପ୍ରୟୋଜନ ନାହିଁ ବିଚାରି ସେ ଆତ୍ମହତ୍ୟା କରିବାକୁ ସ୍ଥିର କଲେ । ଏଣେ ଲୋକ କୋଳାହଳ ନିକଟରୁ ନିକଟତର ହୋଇ ଆସୁଥାଏ । ତେଣୁ ସେ ତରବାରିରେ ନିଜର ବକ୍ଷକୁ ବିଦୀର୍ଣ୍ଣ କରି ରୋମିଓଙ୍କ ନିକଟରେ ପ୍ରାଣତ୍ୟାଗ କଲେ ।

ପାରିସ୍ ସମାଧି ମନ୍ଦିରକୁ ଗଲାବେଳେ ତାଙ୍କର ଜଣେ ଅନୁଚର ଯାଇଥିଲା । ରୋମିଓ ଏବଂ ପାରିସ୍ ପରସ୍ପର ଅସିଯୁଦ୍ଧ କରିବାର ଦେଖି ସେ ଭୟରେ ନଗର ମଧ୍ୟକୁ ପଳାଇ ଯାଇ ଏହି ସମ୍ବାଦ ଦେଲା । ଲୋକେ ସମସ୍ତ ଘଟଣା ସ୍ପଷ୍ଟ ବୁଝି ପାରି ନ ଥିଲେ ହେଁ ସମାଧି ମନ୍ଦିର ଆଡ଼କୁ ଧାଇଁଲେ । ମଣ୍ଟେଗ ଓ କାପିଉଲେଟ ପରିବାରଦ୍ୱୟର ବୃଦ୍ଧ କର୍ତ୍ତା ଦୁହେଁ ମଧ୍ୟ ଶଯ୍ୟା ତ୍ୟାଗକରି ସମାଧି

ମନ୍ଦିର ନିକଟରେ ଉପସ୍ଥିତ ହେଲେ । ଲରେନ୍ସ ପଳାଇ ଯାଉଥିବାର ଦେଖି ଲୋକେ ତାଙ୍କୁ ଧରି ସେଠାକୁ ଘେନ ଆସିଲେ । ସମାଧି ମନ୍ଦିର ନିକଟରେ କିଛି ଭୟଙ୍କର ବ୍ୟାପାର ଘଟିଛି ବୋଲି ଶୁଣିପାରି ସ୍ୱୟଂ ରାଜା ମଧ୍ୟ ସେଠାରେ ଉପସ୍ଥିତ ହେଲେ । ପାରିସ୍, ରୋମିଓ ଏବଂ ଜୁଲିଏଟଙ୍କର ମୃତ ଦେହ ଦେଖି ସମସ୍ତେ ନିତାନ୍ତ ଦୁଃଖିତ ହେଲେ । ରାଜାଙ୍କ ଆଦେଶରେ ଲରେନ୍ସ ସମସ୍ତ ଘଟନାର ବିବରଣ ଦେଇ ରୋମିଓ ଏବଂ ଜୁଲିଏଟ୍ଙ୍କର ଅପୂର୍ବ ପ୍ରେମ ଓ ସେମାନଙ୍କର ବିବାହ ବିଷୟ ପ୍ରକାଶ କଲେ ଏବଂ କହିଲେ ଯେ କାପିଉଲେଟକର୍ତ୍ତା ଜୁଲିଏଟଙ୍କୁ ପାରିସଙ୍କ ସହିତ ବିବାହ ଦେବାକୁ ସ୍ଥିର କରିବାରୁ ସେ ଜୁଲିଏଟଙ୍କୁ ଗୋଟିଏ ଔଷଧ ଦେଇଥିଲେ । ଏହା ଦ୍ୱାରା ସେ ଠିକ୍ ୪୨ ଘଣ୍ଟା ମୃତବତ୍ ପଡ଼ିରହିବାର କଥା । ଏଥିମଧ୍ୟରେ ରୋମିଓ ସମାଧି ମନ୍ଦିରକୁ ଆସି ତାଙ୍କୁ ଉଦ୍ଧାର କରି ନେବା ପାଇଁ ମୁଁ ତାଙ୍କୁ ସମ୍ବାଦ ଦେଇଥିଲି । କିନ୍ତୁ ମୋର ସମ୍ବାଦ ପାଇବା ପୂର୍ବରୁ ସେ ଜୁଲିଏଟଙ୍କ ମୃତ୍ୟୁ ସମ୍ବାଦ ପାଇ ଏଠାକୁ ଆସି ସାରିଥିଲେ । ରୋମିଓ ଏବଂ ପାରିସଙ୍କ ମଧ୍ୟରେ କିପରି ଅସିଯୁଦ୍ଧ ଆରମ୍ଭ ହେଲା, ତାହା ପାରିସଙ୍କ ଅନୁଚର ବର୍ଣ୍ଣନା କଲା । ରୋମିଓଙ୍କ ସହିତ ଜଣେ ଭୃତ୍ୟ ଆସିଥିଲା । ଯଦି ପଥ ମଧ୍ୟରେ ତାଙ୍କର ମୃତ୍ୟୁ ହୁଏ ତେବେ ତାଙ୍କ ପିତାମାତାଙ୍କୁ ଦେବା ପାଇଁ ସେ ଖଣ୍ଡିଏ ପତ୍ର ଉକ୍ତ ଭୃତ୍ୟକୁ ଦେଇଥିଲେ । ସେ ଉକ୍ତ ପତ୍ରଟି ରାଜାଙ୍କୁ ଦେଖାଇଲା । ସେଥିରୁ ଜଣାଗଲା ଯେ ଲରେନ୍ସଙ୍କ ଦ୍ୱାରା ରୋମିଓ ଏବଂ ଜୁଲିଏଟ୍ଙ୍କର ବିବାହ କ୍ରିୟା ସମାହିତ ହୋଇଥିଲା ଏବଂ ଆତ୍ମହତ୍ୟା କରି ଜୁଲିଏଟଙ୍କ ମୃତ ଦେହ ନିକଟରେ ସମାଧି ପାଇବା ଆଶାରେ ସେ ମଣ୍ଟୁଆରୁ ବିଷ କିଣି ଆଣିଥିଲେ । ଏବେ ରାଜା ବୁଝିପାରିଲେ ଯେ ଲରେନ୍ସଙ୍କର କିଛି ଖରାପ ଉଦ୍ଦେଶ୍ୟ ନ ଥିଲା । ଦୁଇ ଜଣ

ପ୍ରେମିକ ପ୍ରେମିକାକୁ ବିବାହ ବନ୍ଧନରେ ଆବଦ୍ଧ କରି ଦୁଇଟି ପରିବାର ମଧ୍ୟରେ ଚିର ବନ୍ଧୁତା ସ୍ଥାପନ କରିବା ତାଙ୍କର ଇଚ୍ଛା ଥିଲା । କିନ୍ତୁ ଦୈବକ୍ରମେ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଅଛି ।

ରାଜା ଦୁଇ ପରିବାରର କର୍ତ୍ତାଦ୍ୱୟଙ୍କୁ କହିଲେ, "ଆଜ ଯେ ଏପରି ଦୁର୍ଘଟଣା ଘଟିଲା, ସେଥିର କାରଣ ହେଉଛି, ତୁମ ଦୁଇ ପରିବାରର ପରସ୍ପର ଶତ୍ରୁତା । ତୁମର ଅପରାଧ ପାଇଁ ଭଗବାନ୍ ତୁମକୁ ଏ ଦଣ୍ଡ ଦେଇଛନ୍ତି ।

ଦୁହେଁ ନିଜ ନିଜ ସନ୍ତାନର ମୃତ୍ୟୁରେ ଦୁଃଖରେ ନିମଗ୍ନ ହୋଇଥିଲେ । ସେମାନେ ନିଜ ନିଜକୁ ନିଜ ସନ୍ତାନର ମୃତ୍ୟୁର କାରଣ ବୋଲି ମନେକଲେ । ବର୍ତ୍ତମାନ କାହାରି ହୃଦୟରେ ଅପର ପ୍ରତି ହିଂସା ବା ରୋଷ ନ ଥିଲା । କାପିଉଲେଟକର୍ତ୍ତା କହିଲେ, "ମୋର କନ୍ୟା ତୁମ ପୁତ୍ରକୁ ପତିରୂପେ ଗ୍ରହଣ କରିଥିଲା । ଆଜ ସେ ନାହିଁ କିମ୍ବା ତୁମର ପୁତ୍ର ନାହିଁ; ମାତ୍ର ଆମେ ଦୁହେଁ ପରସ୍ପର ସମ୍ବନ୍ଧୀ । ମୋତେ ସମ୍ବନ୍ଧୀରୂପେ ଗ୍ରହଣ କର ।" ମଣ୍ଟେଗକର୍ତ୍ତା ଉତ୍ତର କଲେ, "କେବଳ ଯେ ତୁମକୁ ମୁଁ ସମ୍ବନ୍ଧୀ ବୋଲି ସ୍ୱୀକାର କରୁଛି ତାହା ନୁହେଁ, ମୁଁ ମୋର ପୁତ୍ରବଧୂ ଜୁଲିଏଟ୍‌ର ଗୋଟିଏ ସ୍ୱର୍ଣ୍ଣମୟୀ ମୂର୍ତ୍ତି ନିର୍ମାଣ କରାଇ ଭେରୋନାରେ ପ୍ରତିଷ୍ଠା କରାଇବି । ଲୋକେ କାଳକାଳକୁ ତାର ପାତିବ୍ରତ୍ୟର ମହିମା ଗାନ କରିବେ ।" ତହୁଁ କାପିଉଲେଟକର୍ତ୍ତା କହିଲେ, "ମୁଁ ମଧ୍ୟ ରୋମିଓଙ୍କର ଗୋଟିଏ ସ୍ୱର୍ଣ୍ଣ-ମୂର୍ତ୍ତି ପ୍ରତିଷ୍ଠା କରିବି ।"

ଦୁଇ ପରିବାର ମଧ୍ୟରେ ବନ୍ଧୁତା ପ୍ରତିଷ୍ଠିତ ହେଲା । କିନ୍ତୁ ଏହି ବନ୍ଧୁତାର ମୂଲ୍ୟ କମ୍ ନୁହେଁ—ଦୁଇଟି ମହାପ୍ରାଣୀଙ୍କର ଜୀବନ ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

୧। ଅଲ୍‌ଭର ଟ୍ୱିଷ୍ଟ
୨। ଗଲିଭରର ଭ୍ରମଣ କାହାଣୀ
୩। ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
୪। ସମୁଦ୍ରର ନାବିକ
୫। ରାଜା ସଲୋମନଙ୍କ ହୀରାଖଣି
୬। ବିପ୍ଲବୀ
୭। ଚୀନ ସିପାହି
୮। ପମ୍ପେଇନଗରର ଶେଷଦିନ
୯। ରାଜପୁତ୍ର ଓ ଭିକାରି
୧୦। ଦୁଇଟି ନଗରୀର କାହାଣୀ
୧୧। ଡନ୍‌କ୍ୱିକ୍ସ
୧୨। ସାଇଲସ୍ ମାରନାର୍
୧୩। ଲୌହମୁଖାଧାରୀ ମଣିଷ
୧୪। ରବିନ୍‌ସନ୍ କ୍ରୁଶୋ
୧୫। ଅଶୀ ଦିନରେ ପୃଥିବୀ ପରିଭ୍ରମଣ
୧୬। ଦୁଃଖିନୀ
୧୭। ବନ୍ୟ ଡାକର
୧୮। ଶେକ୍‌ସପିଅର କାହାଣୀ (୧ମ)
୧୯। ,, ,, (୨ୟ)
୨୦। ,, ,, (୩ୟ)
୨୧। ଗ୍ରୀସଦେଶର ଉପକଥା
୨୨। ଅନେକ ଆଶା
୨୩। ସମୁଦ୍ର ଗର୍ଭରେ କୋଡ଼ିଏହଜାର ଲିଗ୍ ଭ୍ରମଣ
୨୪। ଟମ୍‌ସୟର୍
୨୫। ଟଲ୍‌ଷ୍ଟୟ କାହାଣୀ (୧ମ)
୨୬। ,, ,, (୨ୟ)
୨୭। ଚେକଭ୍ କାହାଣୀ
୨୮। ଆଇଭାନ୍‌ହୋ
୨୯। ଚନ୍ଦ୍ରକାନ୍ତ ମଣି
୩୦। ରତ୍ନଦ୍ୱୀପ
୩୧। ପ୍ରବାଳ ଦ୍ୱୀପ
୩୨। କଳାଶର
୩୩। ରବିନ୍ ହୁଡ୍
୩୪। ଫ୍ରାଙ୍କୋ
୩୫। ନିକୋଲାସ ନିକଲ୍‌ବି
୩୬। ହେଂଜର ରୁପର୍ଟ
୩୭। ବଡ଼ଘର
୩୮। ଡେଭିଡ୍ କପରଫିଲ୍‌ଡ୍
୩୯। ହରିଣଶିଶୁ
୪୦। କଳାଫୁଲ୍
୪୧। ଟମକକାଙ୍କ କେବିନ୍
୪୨। ଲୋରନାଡୁନ୍
୪୩। ଓମର କାହାଣୀ
୪୪। ଗର୍କି କାହାଣୀ